# ପୃଥିବୀର ଲୋକକଥା

୧୯



# ପୃଥିବୀର ଲୋକକଥା

( କାଶ୍ମୀରର ଲୋକକଥା )

[ ୩ୟ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତ, ବି. ଏସ୍. ସି., ଏଲ୍. ଏଲ୍. ବି.,
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତ, ଏମ୍. ଏ., ବି. ଇଡ଼.,

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

( Kashmir Lokakatha )

Truthya Bhaga

# ପୃଥିବୀର ଲୋକକଥା

( କାଶ୍ମୀରର ଲୋକକଥା )

ତୃତୀୟ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ବକ୍ସିବଜାର ରୋଡ଼, କଟକ-୧

ପ୍ରଥମ ପ୍ରକାଶ :

୧୯୯୧, ମହା ବିଷୁବ ସଂକ୍ରାନ୍ତି

ପ୍ରଚ୍ଛଦପଟ :

ଶ୍ରୀ ରବିନାରାୟଣ ନାୟକ

ମୁଦ୍ରାକର :

**ଅଲକା ପ୍ରେସ,**

ଝାଞ୍ଜିରିମଙ୍ଗଳା, କଟକ-୯

**ମୂଲ୍ୟ—୧୦ ଟଙ୍କା**

# ସୂଚୀପତ୍ର

| ବିଷୟ | ପୃଷ୍ଠା |
| --- | --- |




# ଅଳସୁଆ

ବହୁଦିନ ତଳର କଥା । ସେତେବେଳେ ଜଣେ ଜମିଦାର ଥିଲେ । ତାଙ୍କ ଜମିଦାରୀଟା ଶ୍ରେଷ୍ଠ । ଏଇ ଜମିଦାରଙ୍କର କ୍ଷୁଦ୍ର ପରିବାର ଥିଲା । ଜମିଦାରୀରୁ ଯାହା ଆସେ ତାଙ୍କ ପରିବାର ଚଳିବା ପାଇଁ ଯଥେଷ୍ଟ ଥିଲା । ପିଲଟି ଦିନରୁ ତାଙ୍କ ଉପରେ କେହି ନିର୍ଭର କରୁ ନ ଥିଲେ । ଘରର ଏକମାତ୍ର ପୁଅ ବୋଲି ସେ ଭାରି ଗେହ୍ଲାବସରରେ ବଢିଥିଲେ । ସେ କିଛି କାମ ଶିଖିବାର ଇଚ୍ଛା ବି କଲେ ନାହିଁ । ପିଲା ଓ ଯୁବାବସ୍ଥା ସେ ଗପ କରି ଆଉ ଜୁଆ ଖେଳି କଟାଇ ଦେଲେ । ସେଇ ଅଭ୍ୟାସଟା ତାଙ୍କ ରକ୍ତରେ ମିଶିଗଲା ।

ଜମିଦାରଙ୍କର ପରିବାର ଆଉ କ୍ଷୁଦ୍ର ହୋଇ ନାହିଁ । ପିଲା ଛୁଆ ହୋଇ ଏହା ଲମ୍ବି ଗଲାଣି । ସମସ୍ତଙ୍କର ନୂଆ ନୂଆ ଦାବିଦା । ଖର୍ଚ୍ଚର ବାଟ ଅନେକ । ଜମିଦାରୀର ଆୟ ସେ ତୁଳନାରେ କିଛି ନୁହଁ । ସବୁବେଳେ ଅଭାବ । ସବୁବେଳେ ଅନାଟନ । ଏକଥା ଜମିଦାର ଅନୁଭବ କଲେଣି ।

ଅଳସୁଆମୀ ଗୋଟିଏ ରୋଗ । ଥରେ ସେ ଦେହରେ ପଶିଲେ, ଆଉ ଯାଏ ନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରେ । ଏ ସବୁ ଦୁଃଖ ଦେଖି କରି ଆଉ ତଳେ ତଳେ ଅନୁଭବ କରି ବି

ଜମିଦାର ତାଙ୍କ ସମସ୍ତ ସମୟରେ ଆଉ ଜୁଆ ଖେଳରେ ବିତାଇ ଦିଅନ୍ତି । କପର ଦୁଇ ପଇସା ଆସିବ, ସେ କଥାର ନାଁ ଧରନ୍ତି ନାହିଁ । ସେ ଯେ ସେକଥା ଭାବୁ ନ ଥିଲେ, ତାହା କହି ହେବ ନାହିଁ । ଘଡି ଘଡି ଅନ୍ୟମନସ୍କ ହୋଇ ସେ କ'ଣ କରିବେ, ଚିନ୍ତା କରନ୍ତି । ମଝାନେ ଦି'ଟା ଖାଇ ଦେଲେ, ସେ ଦାଣ୍ଡ ଦୁଆରକୁ ଯାଆନ୍ତି । ସେଇଠି ଗପ ଜମେ । ଜୁଆ ଖେଳ ଆରମ୍ଭ ହୁଏ । ସେ ସେଇଟାରେ ମଜ୍ଜି ଯାଆନ୍ତି । ଘର କଥା ସମ୍ପୂର୍ଣ୍ଣ ସେ ଭୁଲି ଯାଆନ୍ତି ।

ସ୍ତ୍ରୀ ତାଙ୍କର ପରିବାର ମଣିଷ । ସେ ଘର ଚଳାନ୍ତି । ଅଭାବରେ କେତେ ଦିନ ଆଉ ସେ ଘର ଚଳାଇବେ, ସେଥିପାଇଁ ସେ ଖୁବ୍ ଚିନ୍ତିତ । ସୁବିଧା ଜୁଟିଲେ, ସ୍ୱାମୀଙ୍କୁ ସେ ଏ ସମସ୍ୟା ବିଷୟରେ କହୁଥିଲେ । ସ୍ୱାମୀ ସ୍ତ୍ରୀ କଥା ଶୁଣନ୍ତି । ଏକ ଦୀର୍ଘ ନିଃଶ୍ୱାସ ପକାଇ ଚୁପ୍ ହୋଇ ରହନ୍ତି । ସେ ଜାଣନ୍ତି ଯେ ସେ ଅଳସୁଆ । କୌଣସି କାମ ତାଙ୍କ ହାତରେ ହେବ ନାହିଁ । ତେଣୁ ସ୍ତ୍ରୀକୁ ସେ କିଛି ଜବାବ ଦିଅନ୍ତି ନାହିଁ ।

ସ୍ତ୍ରୀ ତାଙ୍କର ଅନୁଭବ କଲେଣି—ବାପର ପ୍ରଭାବ ପିଲାମାନଙ୍କ ଉପରେ ପଡୁଛି । ସେମାନେ ବି କାମ କରିବାକୁ ଅନିଚ୍ଛୁକ । ଜମିଦାରିର ବାଓ୍ୟାରେ ସେମାନେ ଉଡ଼ିବାକୁ ଇଚ୍ଛୁକ । କିନ୍ତୁ ପ୍ରକୃତରେ ସେ ଜମିଦାରିଟାର ଆୟ ସେମାନଙ୍କ ବ୍ୟୟକୁ କୁଳୁଣି, ତାଙ୍କୁ ମା ତାଙ୍କର ବୁଝାଇଲେ ବି ସେମାନେ ବୁଝିବାକୁ ନାରାଜ । ସେଇଟା ତାଙ୍କ ସ୍ତ୍ରୀଙ୍କର ଦୁଃଖ । ଏ ଦିଗରେ ଜମିଦାର ଦାରୁଭୂତ ମୁରାରି । ପିଲାମାନଙ୍କୁ ତାଙ୍କର ଆକଟ ନାହିଁ । କେମିତି ସେମାନେ ବାଗକୁ ଆସିବେ, ସେଥିପ୍ରତି ତାଙ୍କର ନଜର ବି ନାହିଁ ।

ସ୍ତ୍ରୀ ତାଙ୍କର ବଡ଼ ଥାଉ ଥାଉ ବଞ୍ଚଣା ଘୁଞ୍ଚେ । ଘର ଗୋଟାକର ବାସୀ କାମ କରେ । ପିଲାମାନେ ଉଠିଲେ, ଖାଇବାକୁ ଦିଏ । ରନ୍ଧାବଢ଼ା ତ କରେ । କେବଳ ସେତିକି ନୁହେଁ, ଯେ ଯାହା ଫରମାସି ଦିଏ, ତାକୁ ତୁଲାଏ । ବିଶ୍ରାମ ନେବା ପାଇଁ ମୁହୂର୍ତ୍ତେ ସେ ସମସ୍ତ ପାଏ ନାହିଁ । ତଥାପି କେହି କେବେ ଆସି ତାକୁ ସାହାଯ୍ୟ କରନ୍ତି ନାହିଁ । ଆହା କହିବା ତ ଦୂରର କଥା ହୋଇଯାଏ । ସେଥିପାଇଁ ସ୍ତ୍ରୀ ତାଙ୍କର ସମସ୍ତଙ୍କ ଉପରେ ଅସନ୍ତୁଷ୍ଟ । ସ୍ୱାମୀ ଉପରେ ବେଶି ।

ମଣିଷ ବହୁଦିନ ଅସନ୍ତୋଷ ରହି ପାରେ ନାହିଁ । ନିଆଁ ଯେମିତି କୁହୁଳି କୁହୁଳି ଧୂଆଁ କରି କରି ହଠାତ୍ ଜଳି ଉଠେ, ଅସନ୍ତୋଷର ଢଙ୍ଗ ଠିକ୍ ସେଇଆ । ଅସନ୍ତୋଷ ବିଦ୍ରୋହ କରେ । ତାକୁ ସମ୍ଭାଳିବା ଭାରି କଷ୍ଟ । କେତେକ କ୍ଷେତ୍ରରେ ତାହା ଅସମ୍ଭାଳ ହୋଇଥାଏ ।

କିଛି ଦିନ ସ୍ତ୍ରୀ ତାଙ୍କର କାନ୍ଦ କାନ୍ଦ ସ୍ୱାମୀ ପାଖରେ ଗୁହାରି କରୁଥିଲେ । ଫଳ ତ କିଛି ହେଲା ନାହିଁ । ଯେଉଁ କଥାକୁ ସେଇକଥା ରହିଲା । ଏବେ ସେ ଆଉ ନରମ ନାହାନ୍ତି । କଥା କଥାକେ ଚିଡ଼ନ୍ତି । ପାଟି କରନ୍ତି । ବିଶେଷତଃ ସ୍ୱାମୀ ଉପରେ ।

ସ୍ୱାମୀ ସିନା ଅଳସୁଆ । ବୁଦ୍ଧି ତାଙ୍କର କମ୍ ନ ଥିଲା । ସ୍ତ୍ରୀ ରାଗିଲେ ସେ ଖସି ଚାଲି ଯାଆନ୍ତି । ସେ ଜାଣନ୍ତି, ତାଙ୍କ ସ୍ତ୍ରୀର ତାଙ୍କ ପ୍ରତି ସମ୍ମାନ ନାହିଁ । ସେ ଜବତ କଲେ, ସ୍ତ୍ରୀ ତାଙ୍କ କଥାକୁ କାନ ଦେବ ନାହିଁ । ବରଂ ପାଲଟା ଜବାବ ଦେବ । କଥାକୁ କଥା କଟାକଟି ହୋଇ କନ୍ଦଳ ହେବ ।

ଲୋକେ ଜୁଟିବେ । ମଜା ଦେଖିବେ । ବେଳେବେଳେ ଏ ଦୃଶ୍ୟ ଯେ ହେଉ ନ ଥିଲା, ତାହା ନୁହେଁ । ଜମିଦାର ସବୁବେଳେ ଏ ଦୃଶ୍ୟ ହେବାକୁ ଦେଉ ନ ଥିଲେ । ଯଦି ବେଳେ ବେଳେ ଏପରି ଦୃଶ୍ୟ ସୃଷ୍ଟି ହୁଏ, ସେ ସେଠାରୁ ପଳାଇଯା'ନ୍ତି । ନିଜର, ନିଜ ବଂଶର ଆତ୍ମ ମର୍ଯ୍ୟାଦା ରଖିବା ତାଙ୍କର ଏକମାତ୍ର ଲକ୍ଷ୍ୟ । ସ୍ତ୍ରୀଙ୍କର ଯେ ଏଥିପ୍ରତି ପ୍ରଗାଢ଼ ଉଦ୍ୟମ ନ ଥିଲା, ତାହା କହିବା ଭୁଲ ହୋଇଯିବ । କିନ୍ତୁ ଅବସ୍ଥା ଚକ୍ରରେ ପଡ଼ି ସେ ଆତ୍ମଜ୍ଞାନ ହରାଉ ଥିଲେ । ଟିକିଏ ସଚେତନ ହେଲେ, ସେ ଚୂପ୍ ହୋଇ ଯାଉଥିଲେ ।

ସ୍ତ୍ରୀ ତାଙ୍କର ସବୁବେଳେ ରଗେଇ ଖଗେଇ ହୁଅନ୍ତି । ସବୁ କଥାରେ ଲଢ଼ିବା ତାଙ୍କର ଅଭ୍ୟାସ । ବେଳେ ବେଳେ ପାଟି କରନ୍ତି । ଗାଁ ଲୋକଙ୍କର ମୋଟାମୋଟି ଏହାହିଁ ଧାରଣା । ତଥାପି ସେମାନଙ୍କର ସମର୍ଥନ ସ୍ତ୍ରୀଙ୍କ ପକ୍ଷରେ । କେହି କେବେ ଭୁଲରେ ସ୍ୱାମୀକୁ ସମର୍ଥନ କରନ୍ତି ନାହିଁ । ବାକ୍ୟରେ ହେଉ କି ମନରେ ହେଉ । ସେମାନେ ଜାଣନ୍ତି ସ୍ୱାମୀ ତାଙ୍କର ଅଳସୁଆ । ଅକର୍ମଣ୍ୟ । ସ୍ତ୍ରୀଟା ଖାଲି ଘାଣ୍ଟି ହେଉଛି ।

ଥରେ ଜଣେ ପୁରାତନ ବନ୍ଧୁ ଜମିଦାରଙ୍କ ପାଖକୁ ଆସିଥିଲେ । ସ୍ତ୍ରୀ ଯେ ସ୍ୱାମୀଙ୍କୁ ଏପରି ଅକଥା କଥା କହି ଗାଳି ଦେଇପାରେ, ସେ ଏହା ଦେଖି ଆଶ୍ଚର୍ଯ୍ୟ । କାରଣ କୌଣସି ସମ୍ଭ୍ରାନ୍ତ ଘରେ ଏପରି ଘଟଣା ଘଟିବାର କେବେ ସେ ଦେଖି ନ ଥିଲେ । ତେଣୁ ଏହା ତାଙ୍କ କଳ୍ପନାର ବାହାରେ । ଜମିଦାର ଅଳସୁଆ । କୌଣସି କାମ ସେ କରନ୍ତି ନାହିଁ । ଖାଲି ବସି ବସି ସମୟ କଟାନ୍ତି । ଏ ବିଷୟ ସେ ଜାଣି ନ ଥିଲେ । ସେ ଧରି ନେଇଥିଲେ,

ସେ ଜଣେ ସାଧାରଣ ଲୋକ । ତାଙ୍କ ଉପରେ ଘର ତାଙ୍କର ନିର୍ଭରଶୀଳ । ସ୍ତ୍ରୀ ତାଙ୍କର ପ୍ରକୃତିଗତ ଦୋଷ ଯୋଗୁଁ ଏପରି ହୋଇଛନ୍ତି । ଏହି ପରିପ୍ରେକ୍ଷୀରେ ସେ ବନ୍ଧୁଙ୍କୁ ଉପଦେଶ ଦେଲେ—"ବିରାଡ଼ିକୁ ହାତ କାମୁଡ଼ା ଶିଖାଇଲେ, ସେ ହାତକୁ କାମୁଡ଼ି ଦେବ । ଆଗରୁ ହୁସିଆର ହେବାକୁ ହେବ । ଏହାଦିନୁ ତୁମେ ଯଦି ତମ ସ୍ତ୍ରୀକୁ ଆକଟ ନ କର, ଅବସ୍ଥା ତମର ସାଂଘାତିକ ହୋଇଯିବ । ଅବଶିଷ୍ଟ ଜୀବନ ଖାଲି ସନ୍ତୁଳ ହେବ ।"

ଜମିଦାର କହିଲେ—"ତୁମେ ଜାଣିନ । ମୁଁ ଯଦି ପାଟି କରେ, ସେ ଜବତ ହେବ କ'ଣ, ଓଲଟା ଏପରି ପାଟି କରିବ ଯେ ଫଳରେ ଘର ଦ୍ୱାର କମ୍ପିବ । ଗାଁ ଲୋକେ ଏଠି ଜମା ହେବେ । ସେମାନଙ୍କର ମନ୍ତବ୍ୟ ଅସହନୀୟ । ଏହା ଗୋଟିଏ ଦୃଶ୍ୟ ହେବ । ଚୁପ୍ ରହିଲେ, ଏଇମିତି ଗାଳି ଦେଇ ଦେଇ ସେ ଚୁପ୍ ହୋଇଯିବ । ସବୁଠାରୁ ଚୁପ୍ ରହିବା ଭଲ ମୁଁ ଧରି ନେଇଛି । ସେଥିପାଇଁ ମୁଁ ଚୁପ୍ ହୋଇ ରହେ । ଆଉ କ'ଣ କିଛି ଉପାୟ ଅଛି, ସେକଥା ମୁଁ ଚିନ୍ତା କରି ପାରୁନାହିଁ ।"

"ସ୍ତ୍ରୀ ଲୋକଟିକୁ ତ ତୁମେ ଅକ୍ତିଆର କରି ପାରୁନ, ତୁମେ କ'ଣ ଜମିଦାର ହୋଇଛ ? ମୁଁ କିଛି ବୁଝି ପାରୁନ ।" ଏହା ଥିଲି ସାଙ୍ଗର ମନ୍ତବ୍ୟ ।

ଜମିଦାର କହିଲେ—"ମୁଁ ତ ଉପାୟ ପାଉ ନାହିଁ । ତୁମେ ଯଦି ଉପାୟ ବତାଇ ଦେବ, ମୁଁ ତମକୁ ଗୁରୁ ବୋଲି ମାନିବ । ତମର ଉପଦେଶ ଅକ୍ଷରେ ଅକ୍ଷରେ ପାଳିବ ।"

ବନ୍ଧୁ କହିଲେ—"ଏଥର ତୁମ ସ୍ତ୍ରୀ ଗାଳି ଦେଲେ, ତୁମେ ଧମକାଇ କରି କହିବ ଯେ ତୁମେ ଘର ଛାଡ଼ି ଚାଲିଯିବ । ଯଦି ସେ ବନ୍ଦ ନ ହୁଏ, ତୁମେ ଘର ଛାଡ଼ି ଚାଲି ଯିବାକୁ ବାହାରିବ । ଦେଖିବ, ସେ ନଇଁଯିବ । ସେ ଆସି ତୁମର ଗୋଡ଼ ଧରିବ । କ୍ଷମା ମାଗିବ । ଘର ଛାଡ଼ି ନ ଯିବାକୁ କାକୁତି ମିନତି କରିବ ।"

ଏ କଥାଟା ଜମିଦାରଙ୍କ ମନକୁ ପାଇଲା । ସାଙ୍ଗଟି ଚାଲିଗଲା ପରେ ସେ ସେଇକଥା ମନରେ ଗୁଣି ହେଲେ । ଆଖି ଆଗରେ ତାଙ୍କର ନାଚିଗଲା—ସେ ଘର ଛାଡ଼ି ଯାଉଛନ୍ତି । ସ୍ତ୍ରୀ ତାଙ୍କ ଗୋଡ଼ ତଳେ ପଡି କ୍ଷମା ମାଗୁଛି । ତାଙ୍କୁ ନ ଯିବା ପାଇଁ କାକୁତି ମିନତି କରୁଛି । ଏ ଦୃଶ୍ୟ ତାଙ୍କ ମନକୁ ବେଶ୍ ପାଇଲା । ସେ ଖୁସି ହୋଇଗଲେ । ଗାଁ ଦାଣ୍ଡରେ ଟିକିଏ ବୁଲି ଆସିଲେ ।

ସେଇଦିନ ଦ୍ୱିପ୍ରହର ପର୍ଯ୍ୟନ୍ତ ବି ଗଲା ନାହିଁ । ତା' ପୂର୍ବରୁ ସ୍ତ୍ରୀ ତାଙ୍କର ଅବଚରିବାକୁ ଆରମ୍ଭ କଲେ । ସେ ତ ଆଗରୁ ପରାମର୍ଶ ପାଇଛନ୍ତି, ସେ ଔଷଧଟି ପ୍ରୟୋଗ କରିବାକୁ ବାହାରି ପଡ଼ିଲେ । ସେ ସ୍ତ୍ରୀକୁ ତାଙ୍କର କହିଲେ—"ଚୁପ୍ ହୁଅ । ଆଉ ଲୋକହସା କରାଅ ନାହିଁ ।" ଏହା ଶୁଣି ସ୍ତ୍ରୀ କ'ଣ ତାଙ୍କର ସମ୍ଭଳା ପଡନ୍ତେ ? ଜଳନ୍ତା ନିଆଁରେ କିରାସିନି ପକାଇଲେ, ଯାହା ହୁଏ ସେଇଆ ହେଲା । ସେ ଖୁବ୍ ରାଗିଯାଇ ଜଳୁଥିଲା । ଜମିଦାର କହିଲେ—"ମୁଁ ଦେଖୁଛି, ତମ ପାଖରେ ରହି ଆଉ ଚଳି ହେବ ନାହିଁ । ମୁଁ ଆଜି ଘର ଛାଡ଼ି ଚାଲିଯିବି ।"

ସ୍ତ୍ରୀ କହିଲେ—"କୋଉଠିଆ କୁଆଡ଼େ ଯିବ ? କିଏ ବସାଇ କରି ଭୋଜନ ଦେବ ? ମାଲେ ମୋର ! ଧମକ ଦେଉଛି ।

ପ ଟିକୁ ଭାତ ନ ଦେଲେ, ସେ ଖାଏ ନାହିଁ— ସେ ପୁଣି ପଳେଇବ ।
ଯାଉନ, ଯାଅ । ସେ ଖଣ୍ଟି ଯନ୍ଦ ଥାଆନ୍ତା, ଆମେ କାହିଁକ
ଏଇମିତି ହେଉଥାନ୍ତୁ । କେମିତି ଯିବ, ଟିକାଏ ଗଲ ।"

ଏ ପ୍ରକାର ତାସ୍ରଲ୍, ଜମିଦାରଙ୍କର ହାଡେ ହାଡେ ଗଲଗଲ । ସେ ଦ'ପଦ କଣ୍ଠ ଆଉ ଗାଳ ଖାଇବାକୁ ଗ୍ଭହିଁଲେ ନାହିଁ । ବନ୍ଧୁ ଯେମିତି କହିଥିଲେ, ଘରୁ ବାହାରିବାର ଉପକ୍ରମ କଲେ । ତାଙ୍କର ଘର ଗ୍ଭଡ଼ି ଯିବାର ଜମା ମତଲବ ନ ଥିଲା । ସେ ଯେତେବେଳେ କହିଦେଲେ, ତାଙ୍କୁ ତାହା ପାଳିବାକୁ ହେବ । ତାଙ୍କର ଆଉ ଉପାୟ ନ ଥିଲା । ସେ ନାଗ୍ଭର । ବାଧ୍ୟ ହୋଇ ସେ ଚମ ଚମ ହୋଇ ଘରୁ ବାହାରି ପଡ଼ିଲେ । ଭିତର ଅଗଣା ଗ୍ଭଡ଼ି ନହି ଅଗଣାକୁ ଆସିଲେ । କଣେଇ କଣେଇ ପଛକୁ ଅନାଉଥାନ୍ତି । କିନ୍ତୁ ସ୍ତ୍ରୀ ତାଙ୍କର ନିର୍ବିକାର । ବରଂ ବେପରବାୟୁ ଭାବରେ ବସିଥାଏ । ସତେ କି ସ୍ୱାମୀ ତା'ର ଯାହା କହୁଛନ୍ତି, ତା' କର ପାରିବ ନାହିଁ । ଏହା ହିଁ ତ ଙ୍କର ଧାରଣା ଥିଲା । ତାଙ୍କ ଚଳଣିରୁ ଏହା ସୁସ୍ପଷ୍ଟ ଜଣା ପଡ଼ୁଥିଲା । ଶେଷକୁ ଜମିଦାର ଦାଣ୍ଡ ଅଗଣାକୁ ଆସିଲେ । ତାଙ୍କ ସ୍ତ୍ରୀର ତଥାପି ଦେଖା-ନାହିଁ । ତାଙ୍କର ବନ୍ଧୁ କହିଥିଲ ଯେ ଏଇ ପରସ୍ଥିତିରେ ସ୍ତ୍ରୀ ତାଙ୍କର ଆସିବ । ତାଙ୍କ ପାଦ ତଳେ ମୁଣ୍ଡ ନୁଆଇଁ କ୍ଷମା ମାଗିବ । ଏକଥା ନିରର୍ଥକ । ଏହା କଣ ସତରେ ଘଟିବ ନାହିଁ ? ଏଇକଥା ଯେତେଥର ତାଙ୍କ ମନକୁ ଆସୁଛି, ତାଙ୍କ ଗୋଡ ଆଉ ଆଗକୁ ପଡ଼ୁଲ ନାହିଁ । ସତେ କି ପଛରୁ କିଏ ଟାଣି ଦେଲା । ସେ ଟିକାଏ ଅଟକି ଗଲେ । ପଛକୁ ଗ୍ଭହିଁଲେ । କେହି ଅଟକାଇବାକୁ ପଛରେ ନାହିଁ । ସେ ନିଜର ସମ୍ମାନ ଦୃଷ୍ଟିରୁ ଆଗକୁ ଗ୍ଭଲଲେ ।

ପଡ଼ାକୁ ଆସିଲେ । ଗାଁରେ ଜଣଙ୍କ ଘରକୁ ସେ ଯାଆନ୍ତି । ସେଠି ବସା ଉଠା ଚାଲେ । ସିଧା ତାଙ୍କ ଘରକୁ ଗଲେ । ସେଠି ମୁହଁ ବୁଲାଇ ଦେଖିଲେ, ଦାଣ୍ଡ ଦୁଆରମୁହଁ ତାଙ୍କର ଶୁନଶାନ୍ । ବଗଡ଼ ପିଲାଟିଏର ବ ଦେଖା ନାହିଁ ।

ଔଷଧ ସବୁବେଳେ ସାଥୀ ସାଥୀ କାମ ଦିଏ ନାହିଁ । ପରେ ଧରେ । କାମ ଦିଏ । ଏଇ ଧାରଣା ତାଙ୍କର ମନକୁ ଆସିଲା । ସେଥିପାଇଁ ମନକୁ ମନ ନିଜକୁ ସାନ୍ତ୍ୱନା ଦେଲେ । ବନ୍ଧୁଙ୍କ ଦାଣ୍ଡ ଦ୍ୱାର ମୁହଁରେ ବସିଲେ । ସେଠୁ ତାଙ୍କ ଦାଣ୍ଡ ଦୁଆରମୁହଁ ପରିଷ୍କାର ଦେଖାଯାଏ । ସେଇଠି ରହିକ ପର, ଘରୁ କିଏ ଆସି ତାଙ୍କୁ ଡାକିବ ବୋଲି ସେ ଅନାଇ ବସି ରହିଲେ ।

ମନରେ ଆସିଲା – ବନ୍ଧୁଙ୍କ ପରାମର୍ଶ ସେ ଅକ୍ଷରେ ଅକ୍ଷରେ ପାଳିଲେ । ସ୍ତ୍ରୀ ତ ବନ୍ଧୁଙ୍କ କଥାନୁସାରେ ଆସିଲା ନାହିଁ କି କ୍ଷମା ମାଗିଲା ନାହିଁ । ବନ୍ଧୁ ତାଙ୍କର ଏକ ପାରିବାର ଲୋକ । ଜୀବନରେ ଯଶ ସେ ସେଥିପାଇଁ ଅର୍ଜିଛନ୍ତି । ତାଙ୍କର ସ୍ୱଭାବ କେବେ ଭୁଲ ହୋଇ ପାରିବ ନାହିଁ । ତେଣୁ ତାଙ୍କୁ ପାଳିବାରେ ତାଙ୍କର କିଛି ଭୁଲ ରହିଗଲା କି ? ସେ ପୁଣି ଥରେ ଯାହା ଘଟିଗଲା, ତାକୁ ମନେ ପକାଇଲେ । ଠିକ ଠିକ କରି ବିଶ୍ଳେଷଣ କରିବାକୁ ଛାଡ଼ିଲେ ନାହିଁ । ଶେଷକୁ ଦେଖିଲେ— ନା, ତାଙ୍କ ଆଡ଼ୁ କିଛି ତ୍ରୁଟି ହୋଇ ନାହିଁ । ବନ୍ଧୁ ରୋଗ ନ ଜାଣି ଭୁଲ ବଟିକା ଦେଇ ଦେଇଛନ୍ତି । ବର୍ତ୍ତମାନ ତାଙ୍କୁ ସେ ସୁଧାରିବେ । କ'ଣ କରିବାକୁ ହେବ, ସେଇଟା ତାଙ୍କର ଚିନ୍ତାର ବିଷୟ ।

ଏତିକିବେଳେ ସ୍ତ୍ରୀ ତାଙ୍କର ପଦାକୁ ଆସିଲେ । ତାଙ୍କୁ ଦେଖୁ ଦେଖୁ ମନରେ ତାଙ୍କର ଆନନ୍ଦ । ଗୁଣ୍ଡରେ ଦମ୍ ପଶିଲା । ଭାବିଲେ ଯାହା ହେଉ, ଏତେବେଳକୁ ଗୃହିଣୀ ଠିକ୍ କାହ୍ନୁ କଲା । ସେ ତାଙ୍କ ସ୍ତ୍ରୀର ଗତିବିଧି ଉପରେ ଏକଦମ ନଜର ରଖିଲେ । ଏତିକି-ବେଳେ ସ୍ତ୍ରୀ ତାଙ୍କର ଏପଟ ସେପଟକୁ ଖାଲି ଅନାଉଥିଲେ । ସତେ କି କାହାକୁ ସେ ଖୋଜୁଛନ୍ତି । ସେ ଏହା ଦେଖି ତାଙ୍କ ମନ ଆନନ୍ଦରେ ପୂରି ଉଠିଲା । ଏତିକିବେଳେ ତାଙ୍କ ସ୍ତ୍ରୀଙ୍କର ନଜର ତାଙ୍କ ଉପରେ ପଡ଼ିଗଲା । ମୁହଁକୁ ଛୁଆଁଡ ଦେଲେ । ସିଧା ମୁହଁ ବୁଲାଇ ଦ୍ରୁତପଦରେ ଘରେ ପଶିଗଲେ । ଏ ଘଟଣାରେ ଜମିଦାରଙ୍କର ମନର ଅଗ୍ରହ ମରିଗଲା । ମନଟା ପିତା ହୋଇଗଲା ।

ସେଦିନ ନ ଖାଇ କରି ଗାଁରେ ସିନା ବୁଲି ଆସିଲେ ହେଲେ ତାଙ୍କୁ ଖୁବ୍ ଭୋକ ହେଲାଣି । ଭୋକ ସମ୍ଭାଳିବାର କ୍ଷମତା ତାଙ୍କର ନାହିଁ । କଣ ସେ କରିବେ ସେଇଟା ତାଙ୍କର ଚିନ୍ତା । ସେ ବି ଭାବୁଥାନ୍ତି—ବେଳ ଆଖିର ହେଲାଣି । ଘରେ ପିଲାଛୁଆ ସମସ୍ତେ ଖାଇ ସାରିବେଣି । ଯଦି ସ୍ତ୍ରୀଟା ଗାଁରେ ତାଙ୍କୁ ଡ଼ାକିଲା ନାହିଁ, ପିଲାମାନେ ତ ଡାକି ଥାଆନ୍ତେ ! ସେମାନେ ଘରେ ଖିଆପିଆ କଲେ । ବାପଟା ଦାଣ୍ଡରେ ବସିଛି । କେହି ତାଙ୍କ ନାଁ ବି ଧରିଲେ ନାହିଁ । ଏଇଟା ତାଙ୍କର ସଂସାର ! ଏଇଟା ତାଙ୍କର ଘରେ ପ୍ରଭାବ ! ଏକଥା ଭାବି ମନଟା ତାଙ୍କର ମକଚି ହୋଇଗଲା । ସେ ଚିନ୍ତାକଲେ ଘରୁ ତ ସେ ଗୋଡ଼ କାଢ଼ି ଆସିଛନ୍ତି । କେହି ତାଙ୍କୁ ଡ଼ାକିଲେ ନାହିଁ । ଫେରିବା ତାଙ୍କର ଉଚିତ ହେବ ନାହିଁ । ତେଣୁ ସେ କୁଆଡ଼େ ଗୋଟେ ବୁଲିପିବେ । ହଁ। କେବଳ ନଜର ଦସ୍ତାନ ରଖି-

ବାକୁ । କିନ୍ତୁ ଗଲେ କ'ଣ ହେବ ? କେହି ତ ତାଙ୍କୁ ବସାଇ ଖାଇବାକୁ ଦେବେ ନାହିଁ ! ସେ କ'ଣ କିଛି କାମ କରି ପାରିବେ ? ସେ ତ ବୃଦ୍ଧ ଅଳସୁଆ । କୁଟା ଖଣ୍ଡିକ ବି ଖଣ୍ଡ କରିବାକୁ ଅକ୍ଷମ । କାମକୁ ସେ ସମ୍ପୂର୍ଣ୍ଣ ହାଡ଼ । କିନ୍ତୁ ଘରେ କାମ କର ବା ନ କର, ସେଥିରେ ଯାଏ ଆସେ ନାହିଁ । କିଏ ହୁଏତ ବି ପଦ କହି ଦେବ । କିନ୍ତୁ ଖାଇ-ବାକୁ ନିଶ୍ଚୟ ମିଳିବ । ଉପବାସର ପ୍ରଶ୍ନ ଉଠୁ ନାହିଁ । ତେଣୁ ତାଙ୍କ ଭଳି ମଣିଷ ପକ୍ଷେ, ଘରେ ରହିବା ଶ୍ରେୟସ୍କର । କିନ୍ତୁ ସେ ଫେରିବେ କେମିତି ? ଏମିତି ସିଧା ଗଲେ ଘରେ ସମସ୍ତେ ହସିବେ । ଗାଁରେ ସେ ଗୋଟିଏ ଉଦାହରଣ ହୋଇଯିବେ । ମରିବା ଠାରୁ ଏଇ ଜ୍ୱାଳାଗୁଣା ବେଶି କାଟିବ । ତେଣୁ ଗୋଟିଏ କିଛି ଆଳରେ ସେ ଘରକୁ ଫେରିବେ । କାହାର କିଛି କହିବାର କି ସମାଲୋଚନା କରିବାର ଉପାୟ ନ ଥିବ ।

ଏତିକିବେଳେ ସ୍ତ୍ରୀ ତାଙ୍କର ପଡ଼ଶା ଘରକୁ ଗଲେ । ସେଇ ପଡ଼ଶା ଘର ସହିତ ଜମିଦାରଙ୍କର ସୁ ସମ୍ପର୍କ । ଜମିଦାରଙ୍କ ମନ ଘର ଅସ୍ଥିର । ସେ ଭାବୁଥାନ୍ତି—ସୁବିଧାଟା ଏତିକିବେଳେ ଯଦି ହାସଲ ନ କରନ୍ତି, ହୁଏତ ସୁବିଧା ଆଉ ଆସି ନ ପାରେ । କଥାଟା ମୁସ୍କିଲ ହୋଇଯିବ । ତେଣୁ ସୁବିଧା ହାସଲ କରିବା ପାଇଁ ସେ ତତ୍ପର ହୋଇ ଉଠିଲେ । ସେ ସେଠୁ ଉଠିଲେ । ପଡ଼ଶା ଘରକୁ ସିଧା ଗଲେ । ପଡ଼ଶା ଘରର ସବୁ ଲୋକଙ୍କୁ ଖୁସି ମନରେ ପଦେ ଦି'ପଦ ଏଆଡ଼ୁ ସେଆଡ଼ୁ ପଚାରିଲେ । ଆଗେ ଆଗେ ସ୍ତ୍ରୀ, ପଛେ ପଛେ ସ୍ୱାମୀ । କଥାଟା କ'ଣ ସିଧା ନ କହି, ସ୍ୱାମୀ ସମସ୍ତଙ୍କୁ ଏପଟ ସେପଟ କରି କହୁଛନ୍ତି । ଏହାର ଉଦ୍ଦେଶ୍ୟ କ'ଣ ସେମାନେ ଜାଣିପାରିଲେ ନାହିଁ ।

ତାଙ୍କ ଆଗରେ ତାଙ୍କ ସ୍ତ୍ରୀଙ୍କୁ ଦେଖି ସେ ହତ୍‌ବତ୍ ହୋଇ ଗଲେ । ସ୍ତ୍ରୀ ତ ତାଙ୍କୁ କିଛି କହିଲେ ନାହିଁ । କ'ଣ କହି କଥାଟା ତାଙ୍କ ପାଖରେ ଆରମ୍ଭ କରିବେ, ସେ ବି ଜାଣିପାରୁ ନ ଥା'ନ୍ତି । ଏ କଥା ତାଙ୍କ ଆତ୍ମାକୁ ଖୁବ୍ ବାଧୁଥାଏ । ଏ ଘଟଣାରୁ ଫାଇଦା ନ ଉଠାଇଲେ ତାଙ୍କର ଯେ ଆଉ ଗତି ନାହିଁ, ଏଥିରେ ସେ ଏକାନ୍ତ ନିଶ୍ଚିତ । ତେଣୁ ସ୍ତ୍ରୀଙ୍କୁ ସେ କହିଲେ—"ଆଜି ତ ଭଲ ଭଲ ଜିନିଷ କିଛି ରନ୍ଧା ହୋଇଥିବ । ମୁଁ ଏ ଯାଏଁ ଖାଇ ନାହିଁ । ଭୋକ କଲାଣି । ଚାଲ, ଖାଇବାକୁ ଦେବ ।"

ସ୍ତ୍ରୀ ତାଙ୍କର ତାଙ୍କ ମୁହଁକୁ ଖାଲି ଇଟମିଟ କରି ଚାହିଁଲେ । କିଛି ଉତ୍ତର ଦେଲେ ନାହିଁ । ସେ ଭାବିଲେ—ଆଗରୁ ରାଗ ଅଛି ବୋଲି ଯେମିତି ସେ ଅନାଉଛନ୍ତି । ସେ ଯେଉଁ କହିଲେ ଯେ ତାଙ୍କୁ ଭୋକ ହେଉଛି, ତାହା ତାଙ୍କ ସ୍ତ୍ରୀ ଶୁଣିପାରି ନାହାନ୍ତି । ନଇଲେ, ସେ ଏମିତି ହୁଅନ୍ତେ ନାହିଁ ।

ପାଖକୁ ସେ ଲାଗିଗଲେ । କହିଲେ—"କହିଲିପରା, ମୋତେ ଭୋକ । ରନ୍ଧା ତ ସରିବଣି । ଚାଲ ଖାଇବାକୁ ଦେବ ।"

ସ୍ତ୍ରୀ ତାଙ୍କ ମୁହଁ ଛୁଞ୍ଚାଉ ଦେଲେ । କେବଳ ସେତିକି ନୁହଁ । ଆହତ ସର୍ପ ପରି ସେ ଖାଲି ଫଁ ଫଁ ହେଲେ । ପଡ଼ୋଶୀ ଘର ସ୍ତ୍ରୀକୁ ସେ କହିଲେ—"ମୋର କାମ ଅଛି । ଯାଉଛି, ପରେ ଆସିବି ।" ତା'ପରେ ଦୁମ୍ ଦୁମ୍ ହୋଇ ସେ ଘରକୁ ଫେରିଗଲେ ।

ଜମିଦାର ତାଙ୍କର ଢଙ୍ଗକୁ ଖାଲି ଆଁ କରି ଦେଖୁଥିଲେ । ଏପରି ବ୍ୟବହାର ତାଙ୍କ ସ୍ତ୍ରୀ ପକ୍ଷେ ସ୍ୱାଭାବିକ କଥା । କିନ୍ତୁ ଏହା

ସେ ଆଶା କରୁ ନ ଥିଲେ । ତା'ଚଡ଼ା ପଡ଼ଶା ଘରେ ଏ ଦୃଶ୍ୟ ଘଟିଗଲା । ସେମାନେ ସମସ୍ତେ ଏହା ଦେଖିଲେ । ତାଙ୍କ ସ୍ତ୍ରୀ ଯାହା କହିଲେ, ସେ ସବୁ ଶୁଣିଲେ । ତାଙ୍କର ସ୍ଥାନ କେତେ-ଦୂର ତଳେ, ପଡ଼ଶା ଲୋକେ କ'ଣ ଏ କଥା ଭିତରକୁ ଆଣି ନ ଥିବେ ? ସେ କଥା ଭାବିବାରୁ, ମନରେ ବହୁତ କଥା ଉଠିଲା । କିନ୍ତୁ ଉପାୟ ତାଙ୍କର ଆଉ କ'ଣ ? ସେଠି ଠିଆ ହୋଇ ଲାଭ ନାହିଁ । ଏ କଥା ସେ ଜାଣନ୍ତି । ତେଣୁ ସେ ମୁଣ୍ଡକୁ ତଳକୁ ଝୁଲାଇ ଘରକୁ ଫେରିଲେ ।

ମନରେ ଆସିଲା— ଏ ସଂସାର କର୍ମଠଙ୍କ ପାଇଁ । ଯେ କୋଡିଆ, ଅଳସୁଆ, ତାର ସ୍ଥାନ କେଉଁଠି ନାହିଁ । ସେ ବାପ ହେଲେ ବି ପିଲାମାନେ ତାକୁ ସମ୍ମାନ ଦିଅନ୍ତି ନାହିଁ । ସେ ସ୍ୱାମୀ ହେଲେ ହେଁ ସ୍ତ୍ରୀର ସ୍ନେହ ଶ୍ରଦ୍ଧାରୁ ବଞ୍ଚିତ । ଘରର ଜଣେ ହେଲେ ବି, ଘରର ଶ୍ରଦ୍ଧା, ସ୍ନେହ ଓ ଆଦରର ବହୁ ଦୂରରେ ସେ । ସମସ୍ତଙ୍କ ଆଖିରେ ସେ କୋଡିଆ ଓ ଅଳସୁଆ । ଅକର୍ମଣ୍ୟ ବି । ତାର ସୁବିଧା ଉପରେ କାହାର ନଜର ନ ଥାଏ । ଯେଉଁ ପରିସ୍ଥିତିରେ ସେ ଅଛି, ସେଇଥିରେ ସେ ରହିବାକୁ ବାଧ୍ୟ । ଏଇଟା ମୋଟା ମୋଟି ସମସ୍ତଙ୍କର ଧାରଣା । ଏଇ ପରିସ୍ଥିତି ବଦଳାଇବାର ଚିନ୍ତା ସେ ଯଦି କରେ, ତାହା ନିରର୍ଥକ । ଧୃଷ୍ଟତା । ବୃଥା ।

ଜମିଦାର ଧୀରେ ଧୀରେ ଘରକୁ ଆସିଲେ । ତାଙ୍କର ମାନ, ଅଭିମାନ, ଗର୍ବ, ଔଦ୍ଧତ୍ୟ, ସବୁ କିଛି ଚୂରମାର ହୋଇ ସାଇ-ଥିଲା । ସେ ଭାବୁଥିଲେ—ନିଜ ଘରେ ସେ କର୍ତ୍ତା ନୁହଁନ୍ତି । ସେ ଅବାଞ୍ଛିତ । ଅଶ୍ରିତ ।

ଘରେ ପଶି ଦେଖିଲେ—ସ୍ତ୍ରୀ ତାଙ୍କର ବସିଛନ୍ତି । ତାଙ୍କୁ ଦେଖି ସେ ଉଠିଲେ । ସ୍ୱର ତାଙ୍କର କର୍କଶ, ରୁକ୍ଷ । ସେଥିରେ ସେ କହିଲେ—"ଜମି କୋଡିଆଙ୍କର ଅନ୍ତଃପୁରରେ ବାସ ନ ଥାଏ । ତାଙ୍କର ଚୁପ୍ ହୋଇ ଘରେ ରହିବା ଉଚିତ । ବାହାପ ଯ ହାର ନାହିଁ ସେ ବାହାପ ଦେଖାଇବ କାହିଁକି ?"

ସବୁ ପ୍ରକାର ମନ୍ତବ୍ୟ ତାଙ୍କର ଦେହ ସୁହା ହୋଇଗଲାଣି । ହଜମ ନ କରିବାର ବାଟ କେଉଁଠି ଅଛି ? ବନ୍ଧୁଙ୍କର କଥା ମାନି କି ହଟହଟା ସେ ନ ହେଲେ ? ସେଇଆ ତାଙ୍କର ଭାବନାର ବିଷୟ ଥିଲା ।

ସେ ତାଙ୍କ ସ୍ତ୍ରୀକୁ ଅନାଇ ଭାବୁଥିଲେ···ପଚିଶ ବର୍ଷ ତଳେ ଏହାଙ୍କୁ ହାତଧରି ସେ ଆଣିଥିଲେ । ସେ ସେତେବେଳକୁ ସରଳ ଝିଅ । ଆଗନ୍ତୁକ । ସମ୍ପୂର୍ଣ୍ଣ ଅପରିଚିତ । ଅଧିକାର କିଛି ନ ଥିଲା । ପଦେ ଟାଣକରି କହିଲେ, ସେ କାନ୍ଦ ପକାଉଥିଲେ । ଆସ୍ତେ ଆସ୍ତେ ମୁଁ ତାଙ୍କୁ ଅଧିକାର ଦେଇଥିଲି । ପଚିଶ ବର୍ଷ ପରେ ମୁଁ ଏ ଘରର କିଛି ନୁହଁ । ସେ ଘରର ସବୁ । ତାହାହିଁ ତାଙ୍କର ଧାରଣା । କିନ୍ତୁ ଏ ଘର ମୋ'ର । ସମ୍ପତ୍ତି ଏବେବି ମୋ'ର । ମୋ' ଇଚ୍ଛା ଉପରେ ସବୁ ନିର୍ଭରଶୀଳ । ତେଣୁ ସ୍ତ୍ରୀ ଯାହା କହୁଛି, ତାହାକୁ ଧରି ଲାଭ ନାହିଁ । ଜାଣିଶୁଣି ତୋଳା ଘର ମେ ଭାଙ୍ଗିବେ ନାହିଁ । ଯାହା ତୋଳା ହୋଇଛି, ତାହା ରହୁ । ତାହାହିଁ ଦସ କରିବେ । ସବୁ ସହି ସମୟ କାଟିଦେବେ । ସ୍ତ୍ରୀ କ'ଣ କହୁଛି, ଆଉ କାନରେ ସେ ପୂରାଇବେ ନାହିଁ । ସେ ସ୍ତ୍ରୀ ପାଖକୁ ଗଲେ । ତାଙ୍କୁ ଦେଖି ସ୍ତ୍ରୀ ତାଙ୍କର ଚାଲିଲେ । ସେ ଆଗେ ଆଗେ । ପଛରେ ଜମିଦାର । ଉଭୟେ ଆଗପଛ ହୋଇ ଶୋଇବା ଘରେ ପଶିଲେ ।

●

# ଚୋର

ଚୋରି ଯେ କରେ ସେ ଚୋର । ଚୋରି ନୂଆ କଥା ନୁହେଁ । ତା ମଣିଷ ମଧ୍ୟରେ ସୀମାବଦ୍ଧ ନ ଥିଲା । ଜୀବଜନ୍ତୁମାନେ ମଧ୍ୟ ଚୋରିର ଆଶ୍ରୟ ନିଅନ୍ତି । ଜୀବ ଜଗତର ସୃଷ୍ଟି ଠାରୁ ଚୋରି ଚାଲି-ଆସିଛି । ବଞ୍ଚି ରହିବା ସହିତ ଏହାର ନିବିଡ଼ ସମ୍ପର୍କ । ପେଟକୁ ନିଅଣ୍ଟ ହେଲେ ଚୋରିର ଆଶ୍ରୟ ନେବାକୁ ପଡ଼େ । ଏହା ଏକ ଚିରନ୍ତନ ସତ୍ୟ ।

ମଣିଷର ହେତୁ ହେବା ଦିନୁ ସେ ଚୋରିକୁ ପ୍ରଶ୍ରୟ ଦେଇ ନାହିଁ । ଘୃଣା କରିଛି । ଚୋରକୁ ହୀନ ନଜରରେ ଦେଖିଛି । କିନ୍ତୁ ସ୍ଥଳ ବିଶେଷରେ ଏହାର ବ୍ୟତିକ୍ରମ କରିଛି । ନେଇ ଆଣି ଥୋଇ ପାରିଲେ, ଚୋରି ବିଦ୍ୟା ଭଲ ବୋଲି କହିଛି ।

ଯେ ଯେଉଁ କାମ କରୁନା କାହିଁକି, ତାର ସ୍ୱଭାବ ଚରିତ୍ର ତା କାମରେ ପ୍ରତିଫଳିତ ହୁଏ । ଭଲ ମଣିଷ ଯଦି ଚୋରି କରିବାକୁ ବାଧ୍ୟ ହେଲା ଏବଂ ତା ତାର ଅଭ୍ୟାସରେ ପଡ଼ିଗଲା, ତେ ସେ ଚୋରି ଛାଡ଼ି ପାରେ ନାହିଁ । କିନ୍ତୁ ଚୋରିଟା ତାର ଚନ୍ଦ୍ରର କଳଙ୍କ ପରି ଲାଗିରହେ । କିନ୍ତୁ ସେ ଚନ୍ଦ୍ର ହୋଇ ରହେ । ବହୁଦିନ ତଳେ ଏମିତି ଗୋଟିଏ ଚୋର କାଶ୍ମୀରରେ ଥିଲା । ତାର ନାଁ ମହାଦେବ ।

ମହାଦେବ ଚୋର ସିନା, କିନ୍ତୁ ମଣିଷ ଭିତରେ ହୀରାଟିଏ । ଏତେ ବଡ଼ ଚୋର ହୋଇ ଗର୍ବ ତାର ଜମା ନ ଥିଲା । ସେ ସମଦର୍ଶୀ ।

ଯେମାପି । ତା ଛଡ଼ା ସେ ଏକ ଆଦର୍ଶ ଜୀବନ ଯାପନ କରୁଥିଲା । ସେ ଅତି ସାଧାରଣ ଲୋକ ଭଳି ଚଳେ । ନିଶାର ପାଖ ମାଡ଼େ ନାହିଁ । ସ୍ତ୍ରୀ ପ୍ରତି ଆସକ୍ତି ତାର ନ ଥାଏ । ଯାହା ଗ୍ରେର କରି ଆଣେ ତାହା ସବୁବେଳେ ଅସାମାନ୍ୟ । ତଥାପି ସେଥିରୁ ଅଳ୍ପ କିଛି ନିଜ ଖର୍ଚ୍ଚ ପାଇଁ ରଖେ । ଅବଶିଷ୍ଟ ସେ ଦୀନ, ହୀନ, ଅସହାୟ ଓ ଦରିଦ୍ର ମଧ୍ୟରେ ବାଣ୍ଟି ଦେଉଥିଲା । ତାର ନଜର ଗ୍ରେଟ ନୁହେଁ । ସେଥି- ପାଇଁ ତାହା କୌଣସି ଗରିବ ଉପରେ ପଡୁ ନ ଥିଲା । ସେ ଗ୍ରେର କରେ ସତ କିନ୍ତୁ କାହା ଘରେ କଳା କନା ବୁଲାଉ ନ ଥିଲା । ରଖି ଥୋଇ ସେ ଗ୍ରେର କରୁଥିଲା । ତାର ନଜର ଧନୀର ଉଦ୍‌ବୃତ୍ତ ଧନ ଉପରେ । ତାକୁ ସେ ଯେନି ଆସେ । ତେଣୁ ସାଧାରଣ ଲୋକ ମଧ୍ୟରେ ତାର ଆସନ ଖୁବ ଉଚ୍ଚରେ ଥିଲା । ଦୀନ ହୀନ, ଅସହାୟ ଓ ଗରିବ ଲୋକଙ୍କ କଥା ଛାଡ଼ । ସେ ତ ସେମାନଙ୍କ ଆଖିରେ ସ୍ୱୟଂ ଭଗବାନ ।

ମହାଦେବ ଜଣେ ଅସାଧାରଣ ଗ୍ରେର ଥିଲା । ତାର ଗ୍ରେରର ଢ଼ଙ୍ଗ ସବୁବେଳେ ଭିନ୍ନ । ପୂର୍ବ ଗ୍ରେରମାନଙ୍କ ଠାରୁ ଅଲଗା । ଏ ସବୁ ଗ୍ରେରକୁ ବିଶ୍ଳେଷଣ କରି ପୋଲିସ ବଡ଼ ଅସୁବିଧାରେ ପଡ଼େ । ଅପରାଧ ଶାସ୍ତ୍ରରେ ଅଛି—ଗ୍ରେର ଗୋଟିଏ ମାର୍ଗରେ ଗ୍ରେର କରେ । ତେଣୁ କିଏ ଗ୍ରେର କରିଛି ଜାଣିବା ସହଜ ହୁଏ । ମହାଦେବ କିନ୍ତୁ ଗ୍ରେରରେ ଗୋଲକଧନ୍ଦା ସୃଷ୍ଟି କରେ । ଏ ସବୁ ଗ୍ରେର ଜଣେ କରିଛି ନା ଭିନ୍ନ ଭିନ୍ନ ଗ୍ରେର ଏଥିରେ ସମ୍ପୃକ୍ତ, ଏ ସିଦ୍ଧାନ୍ତରେ ପୋଲିସ ପହଞ୍ଚି ପାରେ ନାହିଁ ।

ଗ୍ରେରରେ ସେ ଭରି ଓସ୍ତାଦ । ଆଖିରୁ କଳା ସେ ନେଇ- ଯିବ । କିନ୍ତୁ କେହି ଜାଣି ପାରିବେ ନାହିଁ । ଗତି ତାର ଖୁବ

ଚଞ୍ଚଳ । ଆଖି ପିଛୁଳାକେ କ’ଣ ବୋଲି କଣ କରିଦେବ । ସେଥି-ପାଇଁ ତାକୁ ଚୋରମାନେ ବରାଡ଼ ଚୋର ବୋଲି କହନ୍ତି । କିନ୍ତୁ ସବୁ ଚୋରମାନେ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ଯେ ଚୋରମାନଙ୍କ ମଧ୍ୟରେ ସେ ରାଜା ଓ ମଉଡ଼ମଣି ।

ସବୁ ବ୍ୟବସାୟକୁ ସବୁ ସମୟରେ ନୂଆ ନୂଆ ଲୋକ ଆସନ୍ତି । ସେମାନଙ୍କର ଟିକିଏ ସାଫଲ୍ୟ ଆସିଲେ, ତାଙ୍କ ମନକୁ ଲଗାମ ଦଉଡ଼ି ପାଏ ନାହିଁ । ସେମାନେ ଗର୍ବ ଓ ଔଦ୍ଧତ୍ୟରେ ଫାଟି ପଡ଼ନ୍ତି । ସେଇ ବ୍ୟବସାୟରେ ନିଷ୍ଠା ଓ ପ୍ରତିଷ୍ଠା ଅର୍ଜନ କରିଥିବା ଲୋକଙ୍କୁ ସେମାନେ ଉଚିତ ସମ୍ମାନ ଦିଅନ୍ତି ନାହିଁ । ହେୟ ଜ୍ଞାନ କରନ୍ତି । ନୂତନ ଆଗନ୍ତୁକମାନେ ଅସନ୍ତୁଷ୍ଟ, ପରଶ୍ରୀକାତର, ହୀନ ଆଲୋଚକ ହୋଇ ଉଠନ୍ତି । ତାହା ବି ଚୋରମାନଙ୍କ ଭିତରେ ଘଟିଲା । ଆଗନ୍ତୁକମାନେ ମହାଦେବର ପ୍ରତିଷ୍ଠା ଉପରେ ସନ୍ଦେହ କଲେ । କଥା ପ୍ରସଙ୍ଗରେ କହିଲେ—“ପ୍ରଚାର ମାଧ୍ୟମରେ ମଣିଷ ଉପରକୁ ଉଠେ । ଏହାହିଁ ମହାଦେବର ବାହାଦୁରି ।” ତାର ସାଥୀ ଓ ତା, ଠାରୁ ପୁରୁଖା ଲୋକଙ୍କୁ ଏକଥା ଭାରି ବାଧିଲା । ସେମାନେ ଯେତେ ବୁଝାଇଲେ ବି ଆଗନ୍ତୁକଙ୍କ ମଧ୍ୟରୁ କେହି ସେମାନଙ୍କର କଥାରେ କାନ ଦେଲେ ନାହିଁ । ଶେଷକୁ ବୁଢ଼ା ବୁଢ଼ୀମାନେ କହିଲେ—“ତୁମର ଯଦି ମହାଦେବର ବୁଦ୍ଧି ଓ କୌଶଳରେ ସନ୍ଦେହ ହେଉଛି, ତାକୁ ପରୀକ୍ଷା କର । ଫଳରେ ଦେଖିବ—ସେ କେତେ ଉଚ୍ଚରେ ।”

କଥାଟା ସମସ୍ତଙ୍କ ମନକୁ ପାଇଲା । ସବୁ ଚୋରମାନେ ଏକାଠି ବସିଲେ । ମହାଦେବ ବି ସେ ସଭାରେ ଥାଏ । ବୁଢ଼ା ଚୋରମାନେ କହିଲେ—“ମହାଦେବ, ପିଲାମାନେ କହୁଛନ୍ତି ଯେ,

ତମ ବିଷୟରେ ବହୁତ ଗପ ଶୁଣିଛନ୍ତି । କିନ୍ତୁ ତମର ହାତ ସଫେଇ ଥରେ ବି ଦେଖି ପାରିଲେ ନାହିଁ । ତୁମେ ତ ତାଙ୍କ ଆଖିରେ ସମ୍ମାନପ୍ରଦ । ତମକୁ ସେମାନେ କିଛି କହି ପାରୁ ନାହାଁନ୍ତି । ତମେ ଯଦି ରାଜି ହେବ, ତମର କୌଶଳ ବିଷୟରେ ସେମାନେ ପରୀକ୍ଷା-କରି ଠିକଏ ଜାଣିବେ ।"

ମହାଦେବ ଅତି ନମ୍ର ଭାବରେ କହିଲା—"ସେମାନେ ମୋତେ ପରୀକ୍ଷା କରି ଦେଖି ନିଅନ୍ତୁ । ଅନ୍ୟମାନଙ୍କ କଥାରେ ବିଶ୍ବାସ ନ କରିବା ତାଙ୍କର ଉଚିତ । ମୁଁ ଅଗ୍ନି ପରୀକ୍ଷା ଦେବାକୁ ରାଜି ଅଛି । ସେମାନଙ୍କର ବିବାଦ ହେଉ ।"

ଶ୍ବେରମାନେ ଫୁସ ଫାସ ହେଲେ । ଶେଷକୁ ସେମାନେ କହିଲେ—"ଆମର ବିବାଦ ଯେ ମହାରାଜା ଶୋଇବା ଅବସ୍ଥାରୁ ତାଙ୍କର ପିନ୍ଧା ପାଇଜାମା ଆଣନ୍ତୁ ।"

ଏହା ଏକ କଠିନ କାମ । ମହାଦେବ ଜାଣେ । ତଥାପି ମୁଣ୍ଡ ନୁଆଁଇ କହିଲା—"ଏଇ ସାମାନ୍ୟ କାମ ପାଇଁ ଏତେ ବ୍ୟସ୍ତ ! ମୁଁ ଏହା ହାତକୁ ନେଲି । ସାତ ଦିନ ପରେ ଆଜିର ବାର ସନ୍ଧ୍ୟାରେ ମୁଁ ରଜାଙ୍କର ପିନ୍ଧା ପାଇଜାମା ଦେଖାଇବି ।"

ସଭା ଭଙ୍ଗ ହେଲା, ସମସ୍ତେ ଖୁସିରେ ଘରକୁ ଫେରିଲେ । କିନ୍ତୁ ମହାଦେବ ଖୁସି ମନରେ ଫେରି ପାରିଲା ନାହିଁ । ତା ମୁଣ୍ଡରେ ଗୋଟିଏ ପଥର ବୋଝ ଲଦା ହେଲା ଭଳି ସେ ଅନୁଭବ କରୁଥିଲା । ଏହା ଯେ ଏକ ଦୁଃସାହସିକ ଓ କଠିନ କାମ ସେଥିରେ ତାର ସନ୍ଦେହ ନ ଥିଲା ।

ପରଦିନ ସକାଳେ ସେ ଉଆସରେ ହାଜର । ସେ ଭାବିଲା ଉଆସରେ ଜଗୁଆଳିମାନଙ୍କର ଗତିବିଧି ଓ ଉଆସର ଯିବା ଆସିବା ବାଟ ମଧ୍ୟରେ ତାର ଏକ ନିର୍ଭୁଲ ଧାରଣା ହେବା ଦରକାର । କେବଳ ସେତିକି ନୁହେଁ, ରାଜାଙ୍କର ଦୈନନ୍ଦିନ କାର୍ଯ୍ୟ କଳାପ ଏବଂ କେଉଁଠାରେ ସେ କ'ଣ କରନ୍ତି, ଆଉ ସେଠାକୁ ଯିବାର ବାଟ ସବୁ କଣ, ସେ ବିଷୟରେ ସେ ଜାଣିବା ଉଚିତ । ଏସବୁ ବିଷୟରେ ଠିକ ଧାରଣା ନ ହେଲେ ରାଜାଙ୍କର ପିନ୍ଧା ପାଇଜାମା ଚୋରି କରିବା ଅସମ୍ଭବ । ନ ଜାଣି ଉଦ୍ୟମ କଲେ, ଜଗୁଆଳିଙ୍କ ହାତରେ ଧରା ପଡ଼ିବା ସାର ହେବ । ଏତେ ଦିନ ଧରି ଅର୍ଜିଥିବା ସୁନାମ ସବୁ ମୁହୂର୍ତ୍ତକରେ ନଷ୍ଟ ହୋଇଯିବ । ସେଥିପାଇଁ ଛ' ଦିନ କାଳ ସେ ଖୁବ ପରିଶ୍ରମ କଲା । ସବୁ ଖବର ଠିକନଖି କରି ସଂଗ୍ରହ କଲା । ସେତେବେଳେ ସେ ଦେଖିଲା ଯେ ରାଜାଙ୍କ ଗାଧୁଆ ଘରୁ ଗୋଟିଏ ଶୂନ୍ ପାଇପ ଆସି ନଈରେ ପଡ଼ୁଛି, ସେଥିରେ ଜଣେ ଲୋକ ଯାଇପାରିବ, ତାର କାମ ଯେ ହାସଲ ହୋଇଯିବ, ଏଥିରେ ତାର ସନ୍ଦେହ ହେଲା ନାହିଁ ।

ପାଇଜାମା ହାସଲ କରିବାର ପୂର୍ବରାତ୍ରି, ସେ ତେଲରେ ପୂରା ଗାଧୋଇ ପଡ଼ିଲା । ତା ପରେ ସେ ଉଆସ ଆଡ଼କୁ ବାହାରିଲା ।

ରାଜ ପ୍ରାସାଦକୁ ଲଗି କୁଟିକୁଲ ନଈ । ରାଜାଙ୍କ ଗାଧୁଆ ଘରୁ ଗୋଟିଏ ଶୂନ ପାଇପ ଆସି ସେ ନଈରେ ପଡ଼ୁଛି । ସେ ନଈଟିକୁ ରାତିଯାକ ଆଲୋକିତ କରାଯାଏ । ପ୍ରହରୀମାନେ ଉଆସ ଛାତର ଉପରେ ପହରା ଦେଲାବେଳେ ଏଇ ନଦୀ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । କୁଟିକୁଲ ନଈ ଆର ପଟେ ନଈ ବନ୍ଧ । ତା ପାଖକୁ

କେନାଲ । ତାକୁ ବି ଆଲୋକିତ କରାଯାଏ । ଉଆସର ଗମ୍ବୁଜ ଉପରେ ପ୍ରହରୀ ରହି ସେ କେନାଲକୁ ରାତି ସାରା ଜଗନ୍ତି । ସେଇ କେନାଲ କୂଳରେ କେତୋଟି ନାସପାତି ଗଛ । ସେ ଗଛର ଛାଇ କେନାଲର କିଛି ଅଂଶ ଅନ୍ଧାର କରିଥାଏ । ଗମ୍ବୁଜର ପ୍ରହରୀର ନଜର ସେଠି ପଡ଼ି ପାରେ ନାହିଁ ।

ସେ ଅସ୍ତେ ଆସ୍ତେ ଯାଇ କେନାଲରେ ପଶିଲା । ଯେଉଁଠି ନାସପାତି ଗଛର ଛାଇ ପଡ଼ୁଛି, ସେଇଠି ସେ ପାଣିରେ ବୁଡ଼ିଗଲା । ନାସପାତି ଗଛର ପାଖାପାଖି ପାଣିରୁ ଉଠିଲା । ନାସପାତି ଗଛ ମୂଳେ ଲୁଚି ପ୍ରହରୀମାନଙ୍କ ଗତିବିଧି ଲକ୍ଷ୍ୟ କଲା । ସେ ଦେଖିଲା— ବଡ଼ଘାଟ ଦିଗରୁ ଆସୁଥିବା ପ୍ରହରୀ ଯେଉଁଠି ଭେଟ ହୁଅନ୍ତି, ଟିକଏ ସେମାନେ କଥାବାର୍ତ୍ତା ହୁଅନ୍ତି । ସେମାନଙ୍କର ନଜର ନଈ ଉପରେ ରହେ ନାହିଁ । ତା ଛଡ଼ା ମନ ତ ଗପରେ ରହେ । କାନଟା ବି ସେଇ ପଟେ ଥାଏ । ଏଇ ମଉକା ଦେଖି ସେ ନାସପାତି ଗଛର ଛାଇରୁ ଖସି ଆସି ପାଣିରେ ପଶିଲା । ସେଠି ବୁଡ଼ାଟିଏ ସାଥି ସାଥି ମାରି ପାଣି ତଳେ ତଳେ ଗଲା । ପ୍ରହରୀମାନେ ସିଧା ପାଣି ଉପରକୁ ଦେଖିବେ । ପାଣି ଭିତରେ କଣ ହେଉଛି ସେମାନେ ବା ଜାଣିବେ କିପରି ?

ସେ ବୁଡ଼ି ବୁଡ଼ି ଯାଇ ଶୂନ୍ ପାଇପକୁ ଧରିଲା । ନିଜକୁ ସଙ୍କୁଚିତ କଲା । ସେ ପାଇପ ଭିତରେ ରାଜାଙ୍କ ଗାଧୁଆ ଘରକୁ ଚାଲିଗଲା । ଏଥର ସେ ଶ୍ୱାସ ରୁଦ୍ଧ ଯାହାରୁ ମୁକ୍ତି ପାଇଲା ।

ଗାଧୁଆ ଘରକୁ ଲାଗି ରାଜାଙ୍କର ପୋଷାକ ପିନ୍ଧିବା ଘର । ତା ପାଖକୁ ଶୋଇବା ଘର । ଏ ପଟେ କେହି ଜଗୁଆଳ ରହନ୍ତି

ନାହିଁ । ସେ ଆସ୍ତେ ଆସ୍ତେ ପୋଷାକ ପିନ୍ଧା ଘରକୁ ଗଲା । ସେଠି ଲୁଚି ରହିଲା । ମହାଦେବ ଅଣ୍ଟାରୁ ଗୋଟିଏ ବୋତଲ ବାହାର କଲା । ସେଥିରେ ସେ କିଛି ନାଲି ପିମ୍ପୁଡ଼ି ନେଇଥିଲା । ଆସ୍ତେ ଆସ୍ତେ ରାଜାଙ୍କ ଶୋଇବା ଘରେ ପଶିଲା । ପିମ୍ପୁଡ଼ି ବୋତଲଟି ରାଜାଙ୍କ ପାଦ ପାଖ ପାଇଜାମାରେ ଗୁଡ଼ି ଦେଲା । ପିମ୍ପୁଡ଼ିମାନେ ତ ବନ୍ଦୀ ହୋଇଥିଲେ । ମୁକ୍ତି ପାଇଁ ବାଟ ଖୋଜୁଥିଲେ । ବାଟ ଟିକିଏ ମିଳିବାରୁ ସେମାନେ ବୋତଲରୁ ପଦାକୁ ଧାଇଁଲେ । ଅଳ୍ପକ୍ଷଣରେ ବୋତଲ ଖାଲି । ସମସ୍ତେ ରାଜାଙ୍କ ପାଇଜାମାରେ ଚଢି ଗଲେ । ରାଜାଙ୍କୁ କାମୁଡ଼ିବାକୁ ଆରମ୍ଭ କଲେ । ରାଜା ଗୋଡ଼କୁ ଘୁଞ୍ଚିଲେ । ବିଚଳିତ ହୋଇ ଗୋଡ଼କୁ ଏପଟ ସେପଟ କଲେ । ଶେଷକୁ ସେ ସହି ନ ପାରି ପାଟି କଲେ—"ମୋ ପାଇଜାମା ବାହାର କର । ଏଥିରେ ପିମ୍ପୁଡ଼ି । ମୋତେ କାମୁଡୁଛନ୍ତି ।"

ମହାଦେବ ପରଦା ଆଢୁଆଳରେ ଲୁଚିଥିଲା । ସେ ମୁହୂର୍ତ୍ତେ ଡେରି କଲା ନାହିଁ । ସେ ରାଜାଙ୍କ ପାଖକୁ ଗଲା । ଦକ୍ଷ ଆଙ୍ଗୁଠି ଚଳାଇ ସେ ପାଇଜାମା ବାହାର କରି ଆଣିଲା । ତା ଆଙ୍ଗୁଠିରେ ତ ଭଗବାନ କୁହୁକ ପରଶ ଦେଇଛନ୍ତି । ସେ ଏପରି ନିପୁଣ ଭାବରେ ଏ କାମ ସମ୍ପାଦନ କଲା ଯେ ରାଜା ବି କିଛି ଆଉ ଜାଣି-ପାରିଲେ ନାହିଁ । ଯେଉଁ ବାଟେ ଯାଇଥିଲା ଆଉ ଯେମିତି ଯାଇ-ଥିଲା, ସେଇମିତି ସେ ଫେରି ଆସିଲା ।

ପରଦିନ ଚୋରମାନଙ୍କ ସଭା ବସିଲା । ସେଠାକୁ ସମସ୍ତେ ଆସିଥିଲେ । ସମସ୍ତଙ୍କ ମନରେ ରାଜାଙ୍କ ପାଇଜାମା ଦେଖିବାର କୌତୁହଳ । ଆଗ୍ରହ ।

ମହାଦେବଙ୍କ ବେକରେ ଛୁଆ ଫୁଲ ଭଳି ଥିଲା । ସେ ଶ୍ୱେତ-ମାନଙ୍କ ମଝିରେ ପାଇଜାମା ଖୋଲିଦେଲା ।

ତାକୁ ଦେଖି ସମସ୍ତଙ୍କ ମୁହଁରେ ଆନନ୍ଦର ଭାବ । ସମସ୍ତେ କୋଳାହଳରେ ମାତିଲେ ।

"ସେ ବେ ସେମାନଙ୍କର ରାଜା" ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରାଗଲା ।



# ପୁରୋହିତର କାମ ଅନ୍ଧାରୀ କାମ

କାଶ୍ମୀର ଉପତ୍ୟକାର ଗୋଟିଏ ଛୋଟ ଗାଁ । ସେଥିରେ ଅଳ୍ପ କେତୋଟି ଘର । ସମସ୍ତେ ଗରିବ । କାଠ କୁଡ଼ିଆରେ ସେମାନେ ରହନ୍ତି ।

ସେମାନଙ୍କ ଭିତରେ ଜଣେ ବ୍ରାହ୍ମଣ ଥିଲା । ଅଳ୍ପଦିନ ଆଗରୁ ତା'ର ବାପା ମରି ଯାଇଥିଲା । ଫଳରେ ସେ ଗାଁର ଓ ଆଖ ପାଖ ଗାଁର ପୁରୋହିତ କାମ କରିବାକୁ ସେ ବାଧ୍ୟ ହେଲା ।

ଏଇ ଗାଁ ଓ ଆଖ ପାଖ ଗାଁରେ ଯେଉଁମାନେ ରହୁଥିଲେ, ସେମାନେ ଭାରି ସରଳ । ଧର୍ମ ଭୀରୁ । ତାଙ୍କର ପିତୃପୁରୁଷ ପରି ସେମାନେ ସବୁ କାମରେ ବ୍ରାହ୍ମଣକୁ ଡାକୁଥିଲେ । ତା'ର ପରାମର୍ଶକୁ

ସେମାନେ ଈଶ୍ୱର ବାଣୀ ବୋଲି ଭାବୁଥିଲେ । ସେମାନଙ୍କ ମତରେ ବ୍ରାହ୍ମଣ ଇହକାଳ ଓ ପରକାଳର ସାଥି । ସେ ଅସନ୍ତୁଷ୍ଟ ହେଲେ, ସଂସାର ଉଚ୍ଛନ୍ନ ହୋଇଯିବ ।

ବ୍ରାହ୍ମଣ ଜ ଯୁବକ । ଏ ବୟସରେ ତା'ର ପ୍ରାଧାନ୍ୟ ଦେଖି ତା'ର ଗର୍ବ ଓ ଔଦ୍ଧତ୍ୟ ବଢ଼ିଗଲା । ସେ ଧରାକୁ ସରା ବୋଲି ମନେ କଲା । ସେ ସିନା ଚୁପ୍ ହୋଇ ନମ୍ର ହୋଇ ରହିଥାନ୍ତା, ମେ କିନ୍ତୁ ତାହା କଲା ନାହିଁ । ବରଂ ଗପି ବସିଲା—"ମୁଁ ତମର ଶ୍ରାଦ୍ଧ ଶୁଦ୍ଧି ନ କଲେ, ତମର ମୃତ ବ୍ୟକ୍ତି ସ୍ୱର୍ଗକୁ ଯାଇପାରିବ ନାହିଁ । ମୁଁ ବିବାହ ନ କଲେ, ଝିଅଟିକୁ ତମେ ତମ ଘରକୁ ଆଣି ପାରିବ ନାହିଁ । ଯଦି ବି ଆଣ, ସେ ତମର ପିତୃମୁରୁଷଙ୍କୁ ପାଣି ଦେବାର ପ୍ରଶ୍ନ ବି ଉଠିବ ନାହିଁ । ତା'ଛଡ଼ା ମୁଁ ବିବାହ କରୁଛି ବୋଲି, ସ୍ତ୍ରୀଟି ଆସିଲେ ବି ଘର ମଙ୍ଗଳ ହେଉଛି । ନଇଲେ ଘର ଧ୍ୱଂସ ପାଇଯାନ୍ତା ।"

ତା' କଥା ଶୁଣି ଗାଁଯାକର ଲୋକ ତାକୁ ହବୁ-କଥାରେ ପତ୍ୟାନ୍ତି । ସେ ଯେପରି ନ ରାଗେ, ସେଥିପାଇଁ ଚେଷ୍ଟା ବି କରନ୍ତି । ଯଦି ତା'ର କପାଳ ରାଗରେ କୁଞ୍ଚିତ ହୁଏ, ଲୋକଙ୍କର ପିଳେହି ପାଣି ହୋଇଯାଏ ।

ସେଇ ଗାଁରେ ବୁଢ଼ୀଟିଏ ତା' ପୁଅ ସହିତ ରହୁଥିଲା । ସେମାନେ ତୀର୍ଥକରି ଯାଇଥିଲେ । ସେଠି ଗୋଟିଏ ଖୁବ୍ ସୁନ୍ଦରୀ ଝିଅ ସାଥିରେ ଦେଖା ହେଲା । ବୁଢ଼ୀ ଓ ପୁଅ ମନକୁ ଝିଅଟି ବେଶ୍ ଆସିଲା । ସେମାନେ ତାଙ୍କ ମନ କଥା ଝିଅ ବାପମା'ଙ୍କୁ କହିଲେ । ସେମାନେ ବି ଦେଖିଲେ—ପୁଅଟି ଭଲ । ତାଙ୍କ ମନ-

ଲଖି ପିଲଟିଏ । ତେଣୁ ସେଇ ଝିଅ ଘରେ ବାହାଘର ହୋଇଗଲା । ଫେରିଲା ବେଳକୁ ବୁଢ଼ୀ ପୁଅବୋହୂଙ୍କୁ ଧରି ଗାଁକୁ ଫେରିଲା । ଗାଁରେ ନୂଆ ବୋହୂଟି ସମସ୍ତଙ୍କର ପସନ୍ଦ ହେଲା । ସମସ୍ତେ ବୋହୂ ଉପରେ ଖୁସି ।

ଗାଁ ଲୋକ ବାହାଘର କଲେ ଗାଁ ଲୋକଙ୍କୁ ଭୋଜି ଦେବାର ପ୍ରଥା ଅଛି । ବୁଢ଼ୀଟି ଗାଁରେ ପଦାଣ୍ଠ ଭୋଜିର ଆୟୋଜନ କଲା । ଏ କଥା ଦେଖି ଗାଁ ଲୋକେ ଭାରି ଖୁସି । ଭୋଜିର ଆୟୋଜନରେ ସେମାନେ ଲାଗି ପଡ଼ିଲେ ।

ବ୍ରାହ୍ମଣ ବି ସେଇ ଗାଁର ଲୋକ । ଭୋଜି ଭାତରେ ସେ ବି ଅଂଶ ନିଏ । ବୁଢ଼ୀ ଯାଇ ଭୋଜିକୁ ବ୍ରାହ୍ମଣକୁ ନିମନ୍ତ୍ରଣ କଲା । ତା' ଆଗରେ ପୁଅର ବାହାଘର କେମିତି ହେଲା, ସେ କଥା ବି କହିଲା । ଏ କଥା ଶୁଣି ବ୍ରାହ୍ମଣର ମୁଣ୍ଡକୁ ରକ୍ତ ଉଠିଗଲା । ସେ ଭାବିଲା—ବୁଢ଼ୀର ଏତେ ସାହସ ଯେ ତାକୁ ସେ ପଚାରିଲା ନାହିଁ । ମନଇଚ୍ଛା ବାହାଘର କରିନେଲା । ଏ କଥା ବି ଲୋକେ ଜାଣିଲେ । ସେ ଯଦି କିଛି ପ୍ରତିକାର ନ କରେ, ଅନ୍ୟମାନେ ତା' ଦେଖା-ଦେଖି ସେଇଆ କରିବେ । ଫଳରେ ତା'ର ପ୍ରତିପତ୍ତିରେ ଅଞ୍ଚ ଆସିବ । ଆଜି ତାକୁ ଯେଉଁ ସମ୍ମାନ ମିଳୁଛି, ତାହା ତାକୁ ଆଉ ମିଳିବ ନାହିଁ । ସେଥିପାଇଁ ବୁଢ଼ୀ ଉପରେ ସେ ଖୁବ୍ ରାଗିଗଲା । କିନ୍ତୁ ତା'ର କ୍ରୋଧ ସେ ପ୍ରକାଶ କଲା ନାହିଁ । ମନକଥା ମନରେ ରଖିଲା । ସେ ଜାଣେ ଯେ ଗାଁ ଲୋକେ ସବୁବେଳେ ଓଲଟା ବୁଝନ୍ତି । ଯଦି ସେ ରାଗେ, ଲୋକେ ବି ଅସଲ କଥା ବୁଝିବେ ନାହିଁ । ବରଂ କହିବେ - ବାହାଘର କରିଥିଲେ ବ୍ରାହ୍ମଣଟା ବି'

ପଇସା ପାଇଥାନ୍ତା । ବାହାଘର ନ କରିବାରୁ ଦ'ପଇସା ହରାଇଲା । ସେଥିପାଇଁ ସେ କେମିତି ରାଗୁଛି ଦେଖ । ଏଇ କଥା ଘରିଆଡ଼େ ପ୍ରଚାର ହୋଇଯିବ । ଗାଁ ଲୋକଙ୍କର ପ୍ରକୃତି ଗୋଟେ । ଆନ ନଜର । ପର ମାଲରେ ଚୋକ ପକାଇବା ତାଙ୍କର ଅଭ୍ୟାସ । ଲୋକେ ପ୍ରଚାରକୁ ବିଶ୍ୱାସ କରିବେ । ତା'ର ବଦନାମ ହେବ । ସମାଜରେ ତା'ର ଯେଉଁ ମାନ, ସମ୍ମାନ ଓ ପ୍ରତିଷ୍ଠା ଅଛି, ତାହା ଆଉ ରହିବ ନାହିଁ । ଲୋକେ ତ ଅସନ୍ତୁଷ୍ଟ ହେବେ । ତେଣୁ ଅନ୍ୟ ବ୍ରାହ୍ମଣକୁ ପୁରୋହିତ ପାଇଁ ଡାକିବେ । ଫଳରେ ଉପାସ ରହିବା ସାର ହେବ ।

ସେଇ ଦିନୁ ବୁଢ଼ୀକୁ କପଟ ସେ ପାନେ ଦେବ, ଏହା ହିଁ ତା'ର ଚିନ୍ତା । ସେ ଜାଣେ ଏହା ସେ କଲେ, ତା'ର ପ୍ରଭାବ ଅନ୍ୟମାନଙ୍କ ଉପରେ ପଡ଼ିବ । ଅନ୍ୟମାନେ ଡରିଯିବେ । ସେମାନେ ତାକୁ ନ ପଚାରି ଆଉ କିଛି ମଙ୍ଗଳ କାମ କରିବେ ନାହିଁ । ଫଳରେ ତା'ର ପ୍ରତିଷ୍ଠା ଯେମିତି ଅଛି, ସେଇମିତି ସେ ବଜାୟ ରଖିବ ।

ହେଲା ଦିନ । ଠିକ୍ ସମୟରେ ବ୍ରାହ୍ମଣ ବୁଢ଼ୀ ଘରେ ପହଞ୍ଚିଲା । ବ୍ରାହ୍ମଣକୁ ଦେଖି ବୁଢ଼ୀ ଆନନ୍ଦରେ ଗଦଗଦ୍, ସାଦରେ ସେ ବ୍ରାହ୍ମଣକୁ ଅଭ୍ୟର୍ଥନା କଲା । ତା'ପରେ ସେ ଧାଇଁଲା ତା' କୁଡ଼ିଆ ଭିତରକୁ । ସାଥିରେ ବୋହୂକୁ ଧରି ଆସିଲା । ବୋହୂକୁ କହିଲା—"ମା, ଏ ଆମ କୁଳ ପୁରୋହିତ । ଚିହ୍ନିଥା । ସୁାଙ୍କୁ ମୁଣ୍ଡିଆ ମାର । ସେ ଆଶୀର୍ବାଦ ଦେଲେ, ତୋ'ର କାତ ବଜର ହେବ । ତୁ ଅହ୍ୱ-ଶୁଲକ୍ଷଣୀ ହେବୁ । ସୁଖ ଗଉଜ ଭୋଗ କରିବୁ ।"

ବୋହୂଟି ବ୍ରାହ୍ମଣଙ୍କୁ ମୁଣ୍ଡିଆ ମାରିଲା । ବ୍ରାହ୍ମଣ ହାତ ଟେକିଲା ନାହିଁ କି ଆଶୀର୍ବାଦ କଲା ନାହିଁ । ବୁଢ଼ୀ କହିଲା—"ଗୋସେଇଁ

ଆଶୀର୍ବାଦ କଲେ, ବୋହୂ ମୋ'ର ଘରକୁ ଯିବ । ଆଶୀର୍ବାଦ କରି ଦିଅନ୍ତୁ ।"

ବ୍ରାହ୍ମଣ ତଥାପି ନିରୁତ୍ତର । ନିର୍ବିକାର ଭାବରେ ଠିଆ ହୋଇ ରହିଲା । ଏ କଥା ଦେଖି ବୁଢ଼ୀ ଡରିଗଲା । ସେ କହିଲା— "ଗୋସେଇଁ, କ'ଣ ହେଲା ? ମୋ' ବୋହୂକୁ ଆଶୀର୍ବାଦ କରୁ ନାହଁ ?"

ବ୍ରାହ୍ମଣ ନିଃସଙ୍କୋଚରେ କହିଲା– "ତୁମେ ବୋହୂକୁ ଘର ଭିତରକୁ ଆଗ ନେଇଯାଅ ।"

ଏ ଆଦେଶ ଶୁଣି ଶାଶୁ ଆଶ୍ଚର୍ଯ୍ୟ । ଉପାୟ ତା'ର ନାହିଁ । ବ୍ରାହ୍ମଣର ଆଦେଶ ସେ ପାଳିଲା । ବୋହୂକୁ ଘରେ ଛାଡ଼ିଦେଲା । ତା'ପରେ ବ୍ରାହ୍ମଣ ପାଖକୁ ଆସିଲା । ମୁହଁରେ ତା'ର ପ୍ରଶ୍ନବାଚକ ଚିହ୍ନ ।

ବ୍ରାହ୍ମଣଟି ଶାଶୁକୁ କହିଲା- "ବୋହୂଟିର ଢ଼ଙ୍ଗଢ଼ାଙ୍ଗରୁ ଯାହା ଜଣା ପଡ଼ୁଛି, ଏଟି ତମର ମନ୍ଦ ଗ୍ରହ । ତମର ସୁନାର ସଂସାର ଏ ଚୂନା କରିଦେବ । ତମର ଘର ଧ୍ୱଂସ ହେବା ଅନିବାର୍ଯ୍ୟ । ଭଲ ଦଶା ନାହିଁ ଅଛି ତୁମେ ଏହାକୁ ଦୂରେଇ ଦିଅ ।"

ବୁଢ଼ୀଟି ଖୁବ୍ ଡରିଗଲେ । ସେ କହିଲା— "ବୋହୂଟା ମୋର ଭଲ । ଏଇ ମନ୍ଦ ଗ୍ରହରୁ କିପରି ରକ୍ଷା ପାଇବ, ସେଇଆ ବତାଇ ଦିଅ । ଯାହା ଖର୍ଚ୍ଚ ହେବ ମୁଁ ସେ ସବୁ କରିବ । ବୋହୂକୁ ଦୂରେଇ ଦେଇ ପାରିବ ନାହିଁ ।"

ବୋହୂ ଯେତେବେଳେ ମୁଣ୍ଡିଆ ମାରିଲା, ବ୍ରାହ୍ମଣଟି ଦେଖିଲା, ବୋହୂଟି ଖାଲି ସୁନ୍ଦର ନୁହଁ, ତା ଦେହରେ ବହୁତ ଅଳଙ୍କାର

ବ୍ରାହ୍ମଣ ଏତେ ଅଳଙ୍କାର ପିନ୍ଧା ଝିଅକୁ କେବେ ଦେଖି ନ ଥିଲା । ଅଳଙ୍କାର ପ୍ରତି ତାର ଲୋଭ ହେଲା । ସେ ଭାବିଲା—ପୂଜା କଲେ, ବୁଢ଼ୀ କିଛି ଦକ୍ଷିଣା ଦେବ । ମୁଁ ଯଦି ବୋହୂକୁ ଫସାଇ ନେବି, ବହୁତ ଅଳଙ୍କାର ପାଇବି । ତେଣୁ ସେ ଅତି ଗମ୍ଭୀର ହୋଇଗଲା । ଦୁଃଖରେ ସେ ଯେମିତି ଭାଙ୍ଗି ପଡ଼ୁଛି, ସେମିତି ସେ ଛଳନା କଲା । ସେ କହିଲା—"ପୂଜା କଲେ କିଛି ଲାଭ ହେବ ନାହିଁ । ତମକୁ ଯଦି ଭଲ ଦଶା ଅଛି, ଏ ବୋହୂକୁ ତମକୁ ବିଦା କରିବାକୁ ହିଁ ପଡ଼ିବ । ନଇଲେ ତମର ସର୍ବନାଶ ନିଶ୍ଚିତ୍ ।"

ବୁଢ଼ୀଟି କହିଲା—"ବୋହୂଟି ଆଣିଛି । କେମିତି ତାକୁ ପରିତ୍ୟାଗ କରିବି, ମୁଁ ଭାବି ପାରୁନାହିଁ ।"

ବ୍ରାହ୍ମଣ କହିଲା—"ଏ ବୋହୂ ଖାଲି ଅମଙ୍ଗଳ ନୁହେଁ । ତା ସାଙ୍ଗରେ ଯେତେ ଜିନିଷ ଆଣିଛି ସେ ସବୁ ବି ଅମଙ୍ଗଳ । ମୋର କହିବାର କଥା ନୁହେଁ । ତୁମେ ଗାଁ ଲୋକ । ଭଲ ମନରେ ମୋତେ ପଚାରିଲ । ସେଥିପାଇଁ କହୁଛି । ଗୋଟିଏ କାଠ ବାକ୍ସ ଆଣ । ତମ ବୋହୂକୁ ସେଥିରେ ହାତ ଗୋଡ଼ ବାନ୍ଧି ପକାଇ ଦିଅ । ତାର ବାପ-ଘରର ଯେତେ ଜିନିଷ ସବୁ ଅଛି, ସେ ସବୁ ସେଥିରେ ରଖିଦିଅ । ସେ ବାକ୍ସଟି ନଈରେ ଭସାଇ ଦିଅ ।"

ବୁଢ଼ୀ ଦୀର୍ଘ ନିଃଶ୍ୱାସ ପକାଇଲା । ଗାଁ ଲୋକେ ଏକଥା ଜାଣିଲେ । ସମସ୍ତେ ବ୍ରାହ୍ମଣ ଯାହା କହିଥିଲା, ତା କରିବାକୁ କହିଲେ । ବୋହୂଟି ଏକଥା ଜାଣିଲା । ସେ ନେହୁରା ନିକୁଟା ହୋଇ ତାର ବାପଘରକୁ ବିଦା କରିଦେବାକୁ ଯେତେ କହିଲା, କେହି ତା କଥା ଶୁଣିଲେ ନାହିଁ । ବୁଢ଼ୀର ପ୍ରତିବାଦକୁ ବି କେହି କାନ ଦେଲେ ନାହିଁ ।

ବୁଡ଼ୀର ବନ୍ଧୁବାନ୍ଧବ ଓ ଗାଁ ବାଲା ମିଶି ଗୋଟିଏ ନୂଆ କାଠ ବାକ୍ସ କଲେ । ନଈରେ ଭାସିଲେ ବି ସେଥିରେ ପାଣି ପଶିବ ନାହିଁ । ଗଞ୍ଜର ଗଣ୍ଡରେ ବୋହୂଟିର ହାତ ଗୋଡ଼ ବାନ୍ଧି ଦେଲେ । ବ୍ରାହ୍ମଣ ଯେମିତି କହିଥିଲା, ସେଇଆ କଲେ । ତା ବାପଘରୁ ଆଣିଥିବା ଜିନିଷକୁ ବୋହୂ ସାଥିରେ ତିଆରି କରିଥିବା ବାକ୍ସରେ ରଖିଲେ । ତାପରେ ନଈରେ ଭସାଇ ଦେଲେ । ବାକ୍ସଟି ନଈ କୂଳରେ ଥିବା ପଥରରେ ଘା ତ ପ୍ରତିଘାତ ପାଇ ନଈରେ ଭାସି ଯାଉଥାଏ । କେଉଁଠି ହେଲେ ଅଟକେ ନାହିଁ । ବୋହୂଟି ସେଠାରେ ପଡ଼ି ଏକ ଲୟରେ ଭଗବାନଙ୍କୁ ଡ଼ାକୁଥାଏ । ହଠାତ୍ ସେ ଅନୁଭବ କଲା, ବାକ୍ସଟି ଆଉ ନଈରେ ଭାସି ଯାଉନାହିଁ । କେଉଁଠି ଗୋଟିଏ ଜାଗାରେ ଅଟକି ଯାଇଛି । ପୁଣି କିଛି ସମୟ ପରେ ସେ ଅନୁଭବ କଲା—କିଏ ଜଣେ ବାକ୍ସଟି ଟାଣି ଟାଣି ନେଉଛି । ତାକୁ ଡ଼ର ମାଡ଼ିଲା । ତାର ତ ଉପାୟ ନାହିଁ । ସେ ସେଇଠି ପଡ଼ିଥାଏ । ମନେ ମନେ ଡ଼ାକୁଥାଏ—"ହେ ଭଗବାନ । ମୁଁ କଣ ଦୋଷ କଲି ଯେ ମୋତେ ତୁମେ ଏପରି ଦଣ୍ଡ ଦେଲ ? ସତିରେ ପୁଣି କିଏ ବାକ୍ସ ନେଉଛି ? ମୋର ଅବସ୍ଥା କ'ଣ ହେବ, ମୁଁ ଜାଣେ ନାହିଁ । ତୁମେ ମୋର ଏକମାତ୍ର ସାହା ଭରସା । ତୁମେ ମୋତେ ରକ୍ଷା କର । ନଇଲେ ମୁଁ ମରିଯିବି ।"

ବାକ୍ସଟି କୂଳରେ ଲାଗିଲା । ବାକ୍ସଟି ଖୋଲା ହେଲା । ସେ ଦେଖିଲା—ପୁରୁଷ ଲୋକଟିଏ ବାକ୍ସ ପାଖରେ ଠିଆ ହୋଇଛି । ତାକୁ ଏପରି ଅବସ୍ଥାରେ ପଡ଼ିଥିବାର ଦେଖି ସେ ଆଶ୍ଚର୍ଯ୍ୟ । ତାହା ତା ମୁହଁରୁ ଜଣା ପଡୁଥିଲା । ତା ଦେହରେ ବନ୍ଧା ହୋଇଥିବା ଦଉଡ଼ିକୁ ସେ ଲୋକଟି ଖୋଲିଲା । ଝିଅଟି

ସମ୍ପୂର୍ଣ୍ଣ ମୁକ୍ତ ହୋଇଗଲା । ତାକୁ ଠିଆ କରିବାରେ ସେ ଲୋକଟି ସାହାଯ୍ୟ କଲା । ତାପରେ ସେ ଲୋକ ତାକୁ ପଚାରିଲା, "କ'ଣ ପାଇଁ ତୁମେ ଏପରି ବନ୍ଧା ହୋଇ ନଈରେ ଭସିଆ ହୋଇଛ । ତମର ଭୟ କରିବାର କିଛି ନାହିଁ । ମୋତେ ସବୁ ସତ କଥା କହ । ମୁଁ ତମକୁ ମୋ ପାରୁ ପର୍ଯ୍ୟନ୍ତ ସାହାଯ୍ୟ କରିବ ।"

କଥା ତା'ର ଖାଲି ନରମ ନ ଥିଲା । ସେଥିରେ ସ୍ନେହ ଶ୍ରଦ୍ଧା ଭରି ରହିଥିଲା । ଏ କଥା ବୋହୂଟି ତା' ହୃଦୟରେ ଅନୁଭବ କଲା । ସଂସାରରେ ଏପରି ଲୋକ ଅଛନ୍ତି, ଏ କଥା ଭାବିଲା ବେଳକୁ ତା'ର ହୃଦୟ ତରଳିଗଲା । ସେ କହିଁ କହିଁ ହୋଇ କାନ୍ଦି ଉଠିଲା ।

ଲୋକଟି କହିଲା—"ବ୍ୟସ୍ତ ହୋଇ ଲାଭ ନାହିଁ । ସତକଥା କୁହ ।"

ବୋହୂଟି ସମସ୍ତ ଘଟଣା ଗୋଟି ଗୋଟି କରି ସେଇ ଲୋକ ଆଗରେ କହିଲା । ଏ କଥା ଶୁଣି ସେ ଲୋକଟି ଖୁବ୍ ରାଗିଗଲା । ସେ କହିଲା—"ଏ ସବୁ ପୁରୋହିତର କାରସାଦି । ସେଇ ହିଁ ଏଥିପାଇଁ ଦାୟୀ । ମୁଁ ତାକୁ ଜାଣେ । ତା'ର ଖ୍ରେଟଲୋକ ବନ୍ଧୁତ । ପୁରୋହିତ କାମ କରୁଛି ବୋଲି ଆଖି ଢ'ଠା ତା'ର ତାକୁରେ । ସେ ମଣିଷ ମାନୁ ନାହିଁ । ତୁ ମା' ବ୍ୟସ୍ତ ହୁଅ ନାହିଁ । ମୁଁ ତାକୁ ଆଜ ପାନେ ଦେଉଛି ।"

ସେ ଲୋକଟି ଜଙ୍ଗଲରେ ମାଙ୍କଡ଼ ଧରେ । ସେମାନଙ୍କୁ ପୋଷା ମନାଏ । ତା'ପରେ ପୋଷା ମାଙ୍କଡ଼ ଯେ ଲୁହେଁ, ତାକୁ ବିକେ । ଏଥିରେ ସେ ଜୀବିକା ନିର୍ବାହ କରେ । ସେଇଦିନ ସେ ଗୋଟେ

ବଣୁଆ ମାଙ୍କଡ଼ ଧରିଥିଲା । ସେ ଗଲା, ତାକୁ ଆଣିଲା । କାଠ ବାକ୍ସରେ ତାକୁ ରଖି ବନ୍ଦ କଲା । ପୁଣି ସେଇ ବାକ୍ସକୁ ନଈରେ ଭସାଇ ଦେଲା । ସେତିକିବେଳେ ମାଙ୍କଡ଼କୁ କହିଲା –"ବାଟରେ ପୁରେନ୍ଦ୍ର ଏ ବାକ୍ସକୁ ଅପେକ୍ଷା କରିଥିବ । ତୁ ତାକୁ ପାନେ ଦେଇ ଜଙ୍ଗଲକୁ ପଳାଇବୁ ।"

ବୋହୂକୁ କହିଲା– "ମା, ବ୍ୟସ୍ତ ହୁଅନା । ପୁରେନ୍ଦ୍ର ଯାହା କରିଛି, ଏ ମାଙ୍କଡ଼ ତାକୁ ଉଚିତ ଶିକ୍ଷା ଦେବ । ଏଥିରେ ମୁଁ ନିଶ୍ଚିତ ।"

କିଛି ଦୂରରେ ପୁରେନ୍ଦ୍ର ବାକ୍ସକୁ ଉତ୍କଣ୍ଠାରେ ଅପେକ୍ଷା କରିଥିଲା । ଡେରି ହେବାରୁ ସେ ଅଧୈର୍ଯ୍ୟ ହୋଇ ପଡ଼ିଲା । ଏଣେ ଥଣ୍ଡା ବେଶ୍ ପଡ଼ୁଥାଏ । କାଙ୍ଗ୍ରୀ ଗୋଟିଏ ମାଟିର ପାତ୍ର । ସେଥିରେ ରଡ଼ ନିଆଁ ରଖା ହୁଏ । ଶୀତ ପଡ଼ିଲେ କାଶ୍ମୀର ଲୋକେ ସେଇ କାଙ୍ଗ୍ରୀକୁ ଛାତି ପାଖରେ ଝୁଲାନ୍ତି । ସେ ଦେହକୁ ଗରମ ରଖେ । କାଙ୍ଗ୍ରୀ ରଖିକରି ବି ବ୍ରାହ୍ମଣ ଶୀତରେ ଥରି ଯାଉଥାଏ । ସେ ଭାବିଲା—ବାଟରେ କେହି ଚୋର ସେ ବାକ୍ସଟିକୁ ମାରି ଦେଲା । ସେଥିପାଇଁ ଆଉ ସେଠି ଅପେକ୍ଷା କରିବାକୁ ଚାହିଁଲା ନାହିଁ । ଘରକୁ ଫେରିଯିବାକୁ ଉଦ୍ୟତ ହେଲା । ଠିକ୍ ଏଇ ସମୟରେ ସେ ଜହ୍ନ ଆଲୁଅରେ ଦେଖିଲା –ନଈରେ ବାକ୍ସଟିଏ ଭାସି ଆସୁଛି । ମନ ତା'ର ଏଥର କୁଣ୍ଢେ ମୋଟ । ସେ ସେଠି ଆଉ ଅପେକ୍ଷା କଲା ନାହିଁ । ବାକ୍ସ ପାଖକୁ ଧାଇଁଲା । ପାଣି ଯଦିଓ ବରଫ ପରି ଥଣ୍ଡା, ସେଥିପ୍ରତି ତାର ନଜର ବି ନାହିଁ । ପାଣିରୁ ଟାଣି ଟାଣି ବାକ୍ସଟି ନଈ କୂଳକୁ ଆଣିଲା । ତା'ପରେ ସେ କ'ଣ

କରିବ, ପ୍ରଥମେ ଠିକ୍‌ରେ ପାରିଲା ନାହିଁ । ମଣିଷକୁ ମାରିବାରେ ସେ ଅନଭ୍ୟସ୍ତ । ସ୍ତ୍ରୀ ଲୋକଙ୍କୁ କପରି ହତ୍ୟା କରିବ, ସେ ଏକ ଚିନ୍ତାର ବିଷୟ । ସେ ସ୍ୱର୍ଣ୍ଣଆଡେ ଆଖି ବୁଲାଇ ଆଣିଲା । ସେ ସେଠି ଏକା । ତା ଛଡ଼ା ଆଉ କେହି ନାହାନ୍ତି । ଏଥର ସେ ଦୃଢ଼ ହେଲା । ସାହାସ ବାନ୍ଧି ସେ ବାକ୍ସ ଖୋଲିଲା ।

ମାଙ୍କଡ଼ଟି ବନ୍ଦୀ ଅବସ୍ଥାରେ ଥିବାରୁ ରାଗରେ ଜଳୁଥିଲା । କେମିତି ପଳାଇବ ସେଥିପାଇଁ ସେ ଚେଷ୍ଟା କରୁଥାଏ । ଯେମିତି ବାକ୍ସ ଖୋଲା ହୋଇଛି, ସେ ତା ଭିତରୁ ଡେଇଁ ପଡ଼ିଲା । ସିଧା ବ୍ରାହ୍ମଣ ଉପରକୁ । ଏପରି ଏକ ଅବସ୍ଥା ଆସିବ, ସେକଥା ବ୍ରାହ୍ମଣ କେବେ କଳ୍ପନା ବି କରି ନଥିଲା । ସେ ହତବୁଦ୍ଧି ହୋଇ ଗଲା । ମାଙ୍କଡ଼ କ'ଣ ତାକୁ ଛାଡ଼େ ? ବ୍ରାହ୍ମଣ ସୁନ୍ଦରୀ ହେବାର ଦେଖି ମାଙ୍କଡ଼ର ବହପ ବଢ଼ିଗଲା । ସେ ତାକୁ ବେଶ ଆମ୍ପୁଡ଼ା ଆମ୍ପୁଡ଼ି ଓ କାମୁଡ଼ା କାମୁଡ଼ି କଲା । ବ୍ରାହ୍ମଣଟି ମରିଗଲି ମରିଗଲି ବୋଲି ଚିତ୍କାର କରୁଥାଏ । ସେଇଟା ତ ଘୋର ଜଙ୍ଗଲ । ସେଠି କିଏ ଅଛି ଯେ ସେ ଆସି ତାକୁ ସାହାଯ୍ୟ କରିବ ? ରକ୍ତାକ୍ତ ହୋଇ ବ୍ରାହ୍ମଣଟି ତଳେ ପଡ଼ିଗଲା । ହଠାତ୍ ଯେମିତି ମାଙ୍କଡ଼ଟି ଭାବିଲା ତାର କାମ ସରିଗଲା । ସେମିତି ସେ ଲାଙ୍ଗୁଡ଼ ବୁଲାଇ ଡିଆଁଟିଏ ମାରିଲା । ଆଖି ପିଛୁଳାକେ ସେ ଅଦୃଶ୍ୟ ହୋଇଗଲା ।

କଥାଟି ଲୁଚିଲା ନାହିଁ । ଲୋକଟି ବୋହୂକୁ ଧରି ତାର ସ୍ୱାମୀ ପାଖକୁ ଗଲା । ସମସ୍ତ କଥା କହିଲା । ଲୋକେ ଏ କଥା ଜାଣିଲେ । ସତ୍ୟାସତ୍ୟ ଜାଣିବା ପାଇଁ ପୁରୋହିତଙ୍କୁ ଖୋଜାଗଲା । ଲୋକେ ଦେଖିଲେ ମାଙ୍କଡ଼ ଆମ୍ପୁଡ଼ା ଆମ୍ପୁଡ଼ିରେ ଖଣ୍ଡିଆ ଖାବରା

ଢୋଇ ସେ ଘରେ ପଡ଼ନ୍ତି । କାହାର ଆଉ ପୁରୋହିତ କର୍ମରେ ଶ୍ରଦ୍ଧା ରହିଲା ନାହିଁ । ସେମାନେ କହିଲେ —ବାଠାକର ଗାଠାକର ଅର୍ଥାତ୍ ପୁରୋହିତର କାମ ଅନ୍ଧାରୀ କାମ ।

ପୁରୋହିତ କାନରେ ସବୁକଥା ପଡ଼ିଲା । ସେ ଲାଜରେ ମରିଗଲେ । କାହାକୁ ମୁହଁ ଆଉ ଦେଖାଇ ପାରିଲା ନାହିଁ । ସେ ଗାଁ ଛାଡ଼ି ଲୁଚିକରି ପଳାଇଲା ।

ସେ କୁଆଡ଼େ ଗଲା, କେହି ଜାଣି ପାରିଲେ ନାହିଁ ।

———

# ପାଟରାଣୀ

କାଠୁରିଆଟିଏ । ନିବିଡ଼ ଜଙ୍ଗଲକୁ ଲାଗି ତାର ଘର । ଯେଉଁଠି ସେ ରହେ । ପାଖରେ ତାର ସ୍ତ୍ରୀ ଓ ଝିଅ ରହନ୍ତି । ଝିଅଟି ନାଁ ରାଣୀ । ବୟସ ତାର ଦେଢ଼ ବର୍ଷ ।

ଦିନେ କାଠୁରିଆର ସ୍ତ୍ରୀ ସକାଳୁ ସକାଳୁ ତା କାମରେ ଚାଲିଗଲା । ଗଲାବେଳେ ସ୍ୱାମୀକୁ କହିଲେ—"ମୁଁ ଆସୁ ଆସୁ ଅନେକ ଡେରି ହେବ । ରାଣୀ ରହିଲା । ତାର ଚିନ୍ତା ନେଇଥିବ । ତାକୁ ଛାଡ଼ି କୁଆଡ଼େ ଯିବ ନାହିଁ ।"

ସେ ଶୁଭଲଗ୍ନ ପରେ ରାଣୀ ଅଝଟ ହୋଇ କାନ୍ଦିଲା । ଝିଅକୁ ସମ୍ଭାଳିବାର ଅଭ୍ୟାସ କାଠୁରିଆର ନ ଥିଲା । ତାକୁ କେମିତି ବୁଝାଇବାକୁ ହେବ, ସେ ତ ଜାଣେ ନାହିଁ । ତେଣୁ ସେ ବ୍ୟସ୍ତ ହୋଇ ପଡ଼ିଲା । ତାକୁ ଧରି ଜଙ୍ଗଲକୁ ଗଲା । ଏ ଗଛରୁ ସେ ଗଛ, ଏ ପକ୍ଷୀରୁ ସେ ପକ୍ଷୀ ତାକୁ ଦେଖାଇଲା । ରାଣୀ ଏ ସବୁରେ ବୁଝିଲା ନାହିଁ । ରାହା ଧରି କାନ୍ଦି କାନ୍ଦି ସେ ହାଲିଆ ହୋଇ ପଡ଼ିଲା । ଶେଷକୁ ସେ ଶୋଇ ପଡ଼ିଲା । ସେତେବେଳକୁ କାଠୁରିଆ ନିଦ୍ରାନ୍ତ । ରାଣୀକୁ ସେ ଗୋଟିଏ ଝଙ୍କାଳିଆ ଗଛ ମୂଳରେ ଶୁଆଇ ଦେଲା । ତା ପାଖରେ ସେ ବସିଥାଏ । ଏତିକିବେଳେ ତାର ସାଙ୍ଗମାନେ ସେଠି ଜୁଟିଲେ । ତାଙ୍କ ସାଙ୍ଗେ ଆଳାପରେ ସେ ମାତିଲା । କଥାନନ୍ଦରେ ସେମାନଙ୍କ ସହିତ ଜଗତକୁ ଭୁଲିଗଲେ । ରାଣୀ ଯେ ଗଛମୂଳେ ଶୋଇଛନ୍ତି ତାହାର ହୋସ ରହିଲା ନାହିଁ ।

କାଠୁରିଆ ଯିବାପରେ କେଉଁଠି ଥିଲା କେଜାଣି, କାଉଟିଏ ଉଡ଼ି ଆସିଲା । ଯେଉଁ ଗଛମୂଳରେ ରାଣୀ ଶୋଇଥାଏ, ସେହି ଗଛର ଡାଳରେ ଆସି ବସିଲା । ପିଲାଟିକୁ ଦେଖି କାଉ ଆଶ୍ଚର୍ଯ୍ୟ । ସେ କା' କା' ବହୁତ ରାବିଲା । ସେ ଭାବୁଥିଲା ପିଲାଟିର କେହି ଯଦି ଆଖ ପାଖରେ ଥିବେ, ତା ରାବରେ ତାଙ୍କ ନିଦ ଭାଙ୍ଗିଯିବ । ସେମାନେ ଆସିବେ । ପିଲାଟିର ଦାୟିତ୍ୱ ନେବାରେ ହେଳା କରିବେ ନାହିଁ । କିନ୍ତୁ ତା ଭାବନା ଭାବନାରେ ହିଁ ରହିଗଲା । କେହି ଜଣେ ବି ଦେଖାନାହିଁ । କାଉଟି ଏଥର ଭାରି ବ୍ୟସ୍ତ । ସେ ପିଲାଟି ପାଖରେ ବସି ଡେଣାକୁ ପଡ଼ ପଡ଼ କଲା । ତଥାପି କାହାର ଦେଖା ନାହିଁ । ତାର ରାଣୀ ପ୍ରତି ଦୟା ହେଲା । ସେ ଭାବିଲା ଏଇଟା ଗୋଟେ ଜଙ୍ଗଲ । ଜୀବଜନ୍ତୁ ଏଠି ହାଉଯାଉ । ପିଲାଟି ଏକୁଟିଆ ଶୋଇଛି ।

କେତେବେଳେ କଏ କ'ଣ କରିବ, କଏ କହିବ ? ଏପରି ଅବସ୍ଥାରେ ରାଣୀକୁ ଛାଡ଼ିଯିବାଟା ସେ ଉଚିତ ମନେ କଲା ନାହିଁ । ମନେ ମନେ ସେ ବହୁତ ଗୁଣି ହେଲା । ଶେଷକୁ ସ୍ଥିର କଲା— ରାଣୀକୁ ନେଇଯିବ । ସେ ପାଳିବ । ପିଲାଟିକୁ ସେ ଥଣ୍ଟରେ ଉଠାଇ ନେଲା । ତା ବସାରେ ନେଇ ସେ ଶୁଆଇ ଦେଲା । ରାଣୀର ନିଦ ଖୁବ୍ ଟାଣ । ସେ ଏଥିରେ ଉଠିଲା ନାହିଁ । କାଉର ଆଉ ସେଠି ଅପେକ୍ଷା କରିବାର ଅବକାଶ ନ ଥିଲା । ସେ ସେଠୁ ଉଡ଼ି ଚାଲିଗଲା ଜଙ୍ଗଲ ଭିତରକୁ । ସେଠୁ ସାଥି ସାଥି ଫେରି ଆସିଲା । ଥଣ୍ଟରେ ତାର ପେନ୍ଥାଏ ମିଠା ଅଙ୍ଗୁର କୋଳି । ସେ କୋଳିକୁ ଧରି ରାଣୀ ପାଖରେ ବସି ରହିଲା ।

ଖୁବ୍ ଡେରିରେ ରାଣୀର ନିଦ ଭାଙ୍ଗିଲା । ସେ ଚାରିଆଡ଼କୁ ଅନାଇଲା । ସେ ଦେଖିଲା—ଏଇଟା ନୂଆ ଜାଗା । ଏଠି ବାପ ମା' କେହି ନାହାନ୍ତି । ପାଖରେ ଖାଲି କାଉଟିଏ । ସେ ଅସ୍ୱସ୍ତି ବୋଧ କଲା । ତା'ପରେ କାନ୍ଦିବାକୁ ଆରମ୍ଭ କଲା । ସାନ୍ତ୍ୱନା ଦେବାକୁ କେହି ନ ଥିଲେ ।

କାଉଟି ସେଇଠି ବସିଥାଏ । ସେ ଜାଣେ ସବୁ କଥାର ଶେଷ ଅଛି । ତାହା ବି ଆପେ ଆପେ ଘଟିଯାଏ । ପିଲାଟି ଆପେ ଆପେ କାନ୍ଦ ବନ୍ଦ କରିବ । ସେଥିପାଇଁ ସେ ବ୍ୟସ୍ତ ହେଲା ନାହିଁ । ନିର୍ବିକାର ଭାବରେ ବସି ରହିଲା । ରାଣୀ ବହୁତ ସମୟ ଧରି କାନ୍ଦିଲା । ତା'ପରେ ଆପେ ଆପେ କାନ୍ଦ ତା'ର ସେ ବନ୍ଦ କଲା । କିନ୍ତୁ ଦୀର୍ଘ କାନ୍ଦର ପରବର୍ତ୍ତୀ ଅବସ୍ଥା ହେବା ସାଥି ସାଥି ବନ୍ଦ ହେଲା ନାହିଁ । ତା' ଲାଗି ରହିଲା । ଏତିକିବେଳେ ଅଙ୍ଗୁର କୋଳିଟିଏ କାଉ

ରାଣୀ ପାଟିରେ ଦେଲା । ରାଣୀର ତ ତଣ୍ଟି ଶୁଖି ଯାଉଥିଲା । ପାଟିରେ ଅଙ୍ଗୁର କୋଳ ପଡ଼ିବାରୁ, ସେ ତାକୁ ଅମୃତ ପରି ପାଇଦେଲା । ସେଇଠୁ କାଉ ଗୋଟିଏ ପରେ ଗୋଟିଏ ଅଙ୍ଗୁର କୋଳ ତା ପାଟିରେ ଦେଲା । ରାଣୀ ତା'ର ପେଟ ପୂରିବା ପର୍ଯ୍ୟନ୍ତ ଖାଇଲା । ତା'ପରେ ପୁଣି ଶୋଇଗଲା ।

କାଉଟି ଦେଖିଲା—ତା' ବସାଟି ଖୁବ୍ ଛୋଟ । ଏଥିରେ ମଣିଷ ପିଲା ଚଳିବା ଅସମ୍ଭବ । ସେ କାଠି କୁଟା ସଂଗ୍ରହ କଲା । ବସାଟିକୁ ବେଶ୍ ବଡ଼ କରିଦେଲା । ତା'ପରେ ବିଭିନ୍ନ ପ୍ରକାରର ଫଳ ସେଥିରେ ଜମା କଲା । ରାଣୀ ପ୍ରଥମେ ପ୍ରଥମେ ବାପ ମା'କୁ ଖୋଜୁଥିଲା । ଘରକୁ ଯିବାକୁ ବାହାରୁଥିଲା । କାଳକ୍ରମେ ସେ ସେମାନଙ୍କୁ ପାଶୋରି ଦେଲା । ନୂତନ ପରିସ୍ଥିତି ସହିତ ନିଜକୁ ସାମିଲ କରିନେଲା ।

ଫଳ ଖାଇ ରାଣୀ ବେଶ୍ ଆରାମରେ ବଢ଼ିଲା । ସେ ତ ଦେଖିବାକୁ ଭାରି ସୁନ୍ଦର । ହୃଷ୍ଟପୁଷ୍ଟ ହୋଇଯିବାରୁ ଆଉରି ସୁନ୍ଦର ଦେଖାଗଲା । କାଉଟି ତାକୁ ଅନାଇ ମୁଗ୍ଧ ହୋଇଯାଏ । ଆତ୍ମ-ତୃପ୍ତି ଅନୁଭବ କରେ ।

ପିଲାଟି ବଢ଼ିବା ସାଙ୍ଗେ ସାଙ୍ଗେ ତା'ର ଲୁଗାପଟା ଦରକାର ହେଲାଣି । କାଉଟି ସେ ସବୁ ପୂରଣ କରେ । ତା' ବୟସର ପିଲାଙ୍କର ଲୁଗାପଟା ଲୋକେ ଖରାରେ ଶୁଖାନ୍ତି । କାଉ ସେଥିରୁ ରାଣୀର ଯାହା ଦରକାର, ଚୋରିକରି ନେଇଆସେ । ରାଣୀକୁ ସେସବୁ ପିନ୍ଧିବାରେ ସାହାଯ୍ୟ କରେ । ରାଣୀ ଆନନ୍ଦରେ ଜଙ୍ଗଲରେ ଖେଳି-ବୁଲି ଦିନ କଟାଏ ।

ଗଣୀ ଜାଉର ଜୀବନ । ଗଣୀ ବି ପିଲାଟି ଦିନରୁ ଜାଉକୁ ଦେଖୁଛି । ତେଣୁ ସେ ଜାଉକୁ ଖୁବ୍ ଭଲପାଏ । ଏମିତିକି ତାକୁ ଘଣ୍ଟାଏ ନ ଦେଖିଲେ, ସେ ବି ବାଇଆ ହୋଇଯାଏ ।

ଗଣୀର ଜଙ୍ଗଲରେ ଡର ଭୟ ନାହିଁ । ସବୁ ଜୀବଜନ୍ତୁ ସହିତ ସେ ପରିଚିତ । ସେମାନେ ବି ତାକୁ ଆଦର କରନ୍ତି । ସେ ଯେ ତାଙ୍କ ଭିତରୁ ଜଣେ, ସେମାନେ ସେଇଆ ଭାବନ୍ତି ।

ମଣିଷ ଏକ ଅଦ୍ଭୁତ ଜୀବ । ତାର ଅନୁକରଣ କରିବା ଶକ୍ତି ଅତୁଳନୀୟ । ସେ ସବୁ ଅବସ୍ଥା ସହିତ ଖାପଖୁଆଇ ଚଳିପାରେ । ଭଗବାନ ତାକୁ ପ୍ରେମ, ସ୍ନେହ ଶ୍ରଦ୍ଧା, ଦୟା ଦେଇଛନ୍ତି । ସେଥିରେ ସେ ସମସ୍ତଙ୍କୁ ଜିଣିନେବ । ଗଣୀର ସ୍ନେହ ଶ୍ରଦ୍ଧା, ଦୟା ଯୋଗୁ ସବୁ ଜୀବ୍ ତା ପାଖରେ ଆସି ଜୁଟନ୍ତି । କେହି ତାକୁ ହିଂସା କରନ୍ତି ନାହିଁ । ବରଂ ତାକୁ ଭାରି ଭଲ ପାଅନ୍ତି । ଜାଉ ନ ଥିଲା ବେଳେ ସେ ସେମାନଙ୍କ ମେଳରେ ବେଳ କାଟି ଦିଏ ।

ଚଢ଼େଇମାନଙ୍କ ସ୍ୱର ମଧୁର । ହୃଦୟ ସ୍ପର୍ଶୀ । ଗଣୀ ସେଇ ସ୍ୱର ଅନୁକରଣ କଲା । ବେଳେ ବେଳେ ସେଇ ସ୍ୱରରେ ସେ ଗୀତ ଗାଏ । ପ୍ରାକୃତିକ ଦୃଶ୍ୟରେ ସେ ମଜ୍ଜିଆଲ ହୁଏ । ଶୀତ ଋତୁରେ କାଶ୍ମୀରରେ ବରଫ ପଡ଼େ । କେହି ପଦାକୁ ବାହାରନ୍ତି ନାହିଁ । ଅନ୍ୟ ଋତୁରେ ଗଣୀ ଦିନଯାକ ପଦାରେ ବୁଲେ । ଚେନାର ଗଛର ଗହଳିଆ ସବୁଜ ପତ୍ର ଓ ମାଟିଆ ରଙ୍ଗର ଗଣ୍ଡି ତାକୁ ଭାରି ଭଲ ଲାଗେ । ଶରତ ଋତୁରେ ଯେତେବେଳେ ସବୁ ଗଛରେ ପତ୍ରଆସେ, ପେସ୍ତା ଅଙ୍ଗୁର ଓ ବାଦାମ ଗଛରେ ଫଳ ଭର୍ତ୍ତି ହୋଇଯାଏ— ଗଣୀର ଆନନ୍ଦ ଦେଖିବ କ'ଣ ? ସେ ଡେଇଁ ଡେଇଁ ଜଙ୍ଗଲ ଯାକ

ବୁଲେ । ଘରକୁ ବନରେ ଜମା ଫେରେ ନାହିଁ । ଭୋକ ହେଲେ ସେଇ ଫଳରୁ ପେଟେ ଖାଇଦିଏ । ପକ୍ଷୀମାନଙ୍କର ଗୀତ ତ ଖୁବ୍ ଭଲ ଲାଗେ । କଳା ହଳଦିଆ ପର ଥିବା ସୁନ୍ଦର ଓରିଓଲର ମିଠା ସ୍ୱର ତାର କାନରେ ପଡ଼ିଲେ, ସେ ବିହ୍ୱଳ ହୋଇଯାଏ । ଜଙ୍ଗଲରେ ଫୁଟୁଥିବା ଫୁଲ ସବୁ ସଂଗ୍ରହ କରେ । ପ୍ରଥମେ ପ୍ରଥମେ କାଉ ଫୁଲମାନ ଆଣି ରାଣୀକୁ ଦେଉଥିଲା । ତାକୁ ଦେଖି ଦେଖି ସେଥିରୁ ଫୁଲଗୁନ୍ଥା ସେ ଶିଖି ଯାଇଛି । ସେ ଫୁଲର ହାର କରେ । ନିଜେ ତାକୁ ପିନ୍ଧେ । ସେ ଖୁବ୍ ସୁନ୍ଦର ଦେଖାଯାଏ । ତା' ଛଡ଼ା ପକ୍ଷୀମାନେ ଗୀତ ନ ଗାଉଥିବା ବେଳେ ସେ ଗୀତ ଗାଏ ।

ରାଣୀ ଏବେ ଛୋଟ ପିଲା ହୋଇ ଆଉ ନାହିଁ । ସେ ଏକ ଯୁବତୀ । ଦେଖିବାକୁ ଖୁବ୍ ସୁନ୍ଦର । ତାର ସୌନ୍ଦର୍ଯ୍ୟରେ ଆଖି ଝୋସି ହୋଇଯିବ ।

ଦିନକର କଥା । ସେ ଫୁଲ ଗୁନ୍ଥିବାରେ ବ୍ୟସ୍ତ । ଏଣେ ମନ ଆନନ୍ଦରେ ସେ ଗୀତ ଗାଉଥିଲା । ସେତିକବେଳେ ସେ ଦେଶର ରାଜା ସେ ବାଟରେ ଯାଉଥିଲେ । ମଧୁର ଗୀତର ମୂର୍ଚ୍ଛନା ତାଙ୍କ କାନରେ ପଡ଼ିଲା । ସେ ତନ୍ମୟ ହୋଇଗଲେ । ସେ ଆସ୍ତେ ଆସ୍ତେ ଯେଉଁ ଦିଗରୁ ଗୀତ ଭାସି ଆସୁଥିଲା, ସେଇ ଆଡ଼କୁ ଗଲେ । ଶେଷରେ ରାଣୀକୁ ଦେଖିଲେ । ସେତେବେଳକୁ ରାଣୀର ଦେହରେ ଗୋଟିଏ ଶତ ଅପରିଷ୍କାର ପୋଷାକ । ତଥାପି ତାର ସୌନ୍ଦର୍ଯ୍ୟ ଅଦ୍ଭୁତ । ତାର ମୁହଁ ଜ୍ୟୋତିର୍ମୟ । ଦେହରେ ଫୁଲର ମାଳ । ଆଗରେ ଫୁଲର ଗଦା । ଏସବୁ ଦେଖି ରାଜା ମୁଗ୍ଧ । ବିହ୍ୱଳିତ । ମନ ତାଙ୍କର ବିଚଳିତ । ଅସ୍ଥିର । ନିଜେ ତାଙ୍କ ଧଳା ଘୋଡ଼ାରୁ

ଓହ୍ଲାଇ ପଡ଼ିଲେ । ରାଣୀ ପାଖକୁ ଗଲେ । ତାର ପରିଚୟ ସଂଗ୍ରହ କଲେ । ରାଣୀ ତାଙ୍କୁ ଖୁବ୍ ଭଲ ଲାଗିଲା । ତାକୁ ବିବାହ କରିବାକୁ ରାଜା ଯେ ରାଜି, ଏକଥା ତାକୁ ଜଣାଇଦେଲେ । ରାଣୀ ଆପତ୍ତି କଲା ନାହିଁ । ରାଜାଙ୍କ ନିମନ୍ତ୍ରଣ ରକ୍ଷା କଲା । ତାକୁ ଘୋଡ଼ା ପିଠିରେ ବସାଇ ରାଜା ରାଜପ୍ରାସାଦକୁ ନେଇ ଆସିଲେ । ସେଠି ବାହାହୋଇ ପଡ଼ିଲେ ।

ରାଜାଙ୍କର ଆଗରୁ ଦୁଇ ରାଣୀ ଥିଲେ । ସେମାନେ ବି ଅନିନ୍ଦ୍ୟ ସୁନ୍ଦରୀ । ରାଣୀ ଆସି ତୃତୀୟ ରାଣୀ ହେଲା ।

କିଛିଦିନ ଚାଲିଗଲା । ରାଜାଙ୍କର ତିନି ରାଣୀ ସିନା ଥିଲେ । କାହାକୁ ରାଜା ପାଟରାଣୀ କରି ନ ଥିଲେ । ଜଣକୁ ତାଙ୍କର ପାଟରାଣୀ କରିବାର କଥା । ଏଇଟା ପ୍ରଥା । ପ୍ରଜାମାନଙ୍କ ଚାପରେ ତାଙ୍କ ଭିତରୁ ଜଣକୁ ପାଟରାଣୀ କରିବାର କଥା ଉଠିଲା । ସମସ୍ତେ ସୁନ୍ଦରୀ । ଏକେ ଆରକୁ ବଳି କରି । କାହାକୁ ପାଟରାଣୀ କରିବେ, ସେ ଏକ ହୃଦଗତ ପ୍ରଶ୍ନ । ସମାଧାନ ରାଜା କରି ପାରିଲେ ନାହିଁ । ପାତ୍ରମନ୍ତ୍ରୀଙ୍କ ସାହାଯ୍ୟ ବି ନେଲେ । ବିଭିନ୍ନ ଦିଗରୁ ବିଭିନ୍ନ ପ୍ରକାର ଚିନ୍ତା କରାଗଲା । ଶେଷକୁ ସ୍ଥିର ହେଲା ଯେ ତିନିରାଣୀଙ୍କୁ ପରୀକ୍ଷା କରାଯିବ । ଯେ ପ୍ରଥମ ହେବ, ସେ ପାଟରାଣୀ ହେବ । ତାପରେ ରାଜା ତିନି ରାଣୀଙ୍କୁ ତିନୋଟି ରାଜ ସିଂହାସନ ଦେଲେ । ସେମାନଙ୍କୁ କହିଲେ—ଏ ସିଂହାସନକୁ ତୁମେମାନେ ଆଜି ସଜାଅ । ସନ୍ଧ୍ୟାବେଳକୁ ଯେ ସିଂହାସନ ସବୁଠାରୁ ଭଲ ଭାବରେ ସଜାଇ ପାରିବ, ସେ ପାଟରାଣୀ ହେବ ।

ରାଣୀମାନେ ସେଦିନ ଉଦାସ ହୋଇଗଲେ । ପ୍ରଥମ ଦ୍ୱିତୀୟ ରାଜକୁମାରୀ । ସିଂହାସନ କାହାର ସଜା ହେବ, ସେମାନେ ଜାଣନ୍ତି । ସେଥିପାଇଁ ରାଜ୍ୟର ବିଶିଷ୍ଟ କୁଶଳୀ କାରିଗରଙ୍କୁ ସେମାନେ ସାଥି ସାଥି ଡକାଇଲେ । ସିଂହାସନ ସଜାଇବାର ଦାୟିତ୍ୱ ଦେଲେ । ସେମାନଙ୍କୁ କୁହାଗଲା—ପଇସା ପାଇଁ ଚିନ୍ତା କର ନାହିଁ । ସିଂହାସନକୁ ଏପରି ଭାବରେ ସଜାଅ ଯେ, ଯେ ଦେଖିବ, ସେ ମୁଗ୍ଧ ହୋଇଯିବ । କୌଣସି ପ୍ରକାରରେ ସେ ଏଇ ସାଜସଜ୍ଜାକୁ ଭୁଲି ପାରିବ ନାହିଁ । ଏ ଆଦେଶ ପାଇବା ପରେ ବିଶିଷ୍ଟ କାରିଗରମାନେ ତାଙ୍କ କାମରେ ଲାଗିଗଲେ । ଦୁଇ ରାଣୀଙ୍କ ଉଆସ ସରଗରମ ହୋଇ ଉଠିଲା । ସବୁଠି ତରତର । ଚଞ୍ଚଳ । ବ୍ୟସ୍ତତା । ସନ୍ଧ୍ୟା ପୂର୍ବରୁ ସିଂହାସନ ସଜା ସରିଗଲା । ପ୍ରଥମ ରାଣୀଙ୍କର କାରିଗରମାନେ ସିଂହାସନକୁ ଚକମକ କରିଥିଲେ । ମଝିରେ ମଝିରେ ହୀରା ଝଞ୍ଜା ହୋଇଥିଲା । ଦ୍ୱିତୀୟ ରାଣୀଙ୍କର କାରିଗରମାନେ ସିଂହାସନକୁ ମଣିମୁକ୍ତାରେ ସଜାଇଥିଲେ । ଯେ ଦେଖିଲା, ସେ ଚମତ୍କୃତ ହେଲା । ଏ ଦୁଇଟି ଭିତରୁ କେଉଁଟି ଭଲ, ସୁଦକ୍ଷ କାରିଗରଙ୍କ ପକ୍ଷରେ ବାଛିବା ବି କଷ୍ଟ ଥିଲା ।

ଦୁଇ ରାଣୀଙ୍କ ଉଆସ ଯେତେବେଳେ କଂପୁଥାଏ, ରାଣୀର ଉଆସ ନୀରବ, ନିସ୍ତବ୍ଧ ଓ ଶୂନ୍‌ଶାନ । ରାଣୀ ସିଂହାସନ ଆଗରୁ କେବେ ଦେଖି ନ ଥିଲା । ତେଣୁ ସିଂହାସନ ସଜାଇବା ବିଷୟରେ ସେ କିଛି ଜାଣେ ନାହିଁ । ଏ ଗୁରୁଦାୟିତ୍ୱ ତୁଲାଇବାକୁ ସେ ଯେ ସଂପୂର୍ଣ୍ଣ ଅକ୍ଷମ, ଏଥିରେ ତାର ସନ୍ଦେହ ନାହିଁ । ରାଜା ତାକୁ ଏ ବାଦରେ ପକାଇ ଯେ ଅପମାନିତ କରୁଛନ୍ତି, ଏହାହିଁ ତାର ଧାରଣା ହେଲା । ସେଥିପାଇଁ ମନରେ ତାର ଅଶେଷ ଦୁଃଖ । ସେ ଗୋଟିଏ

ଜାଗାରେ ବସି ନଖରେ ଗାର ଟାଣୁଥିଲା । ଏତିକବେଳେ ତାର ପ୍ରିୟ କାଉର 'କା' 'କା' ଶବ୍ଦ ସେ ଶୁଣି ପାରିଲା । ମନରେ ତାର ଅପୂର୍ବ ଆନନ୍ଦ । ଘରୁ ପଦାକୁ ସେ ଧାଇଁ ଆସିଲା । କାଉଟି ଆସି ତା କାନ୍ଧରେ ବସି ପଡ଼ିଲା । ଥଣ୍ଟରେ ତାର ଗୋଟିଏ ମୁଣି । ସେଥିରେ କିଛି ଚେରମୂଳ ଥିଲା । କାଉର ନିର୍ଦ୍ଦେଶରେ ସେ ତାକୁ ପାଣିରେ ବଟୁରିଛ ଦେଲା । ସେଇ ପାଣିରେ କାଉ ଯେମିତି ବତାଇଲା, ସେମିତି ସେ ସିଂହାସନକୁ ଚିତ୍ରିତ କଲା ।

ସୂର୍ଯ୍ୟ ଅସ୍ତ ହେଲେ । ଅନ୍ଧାର ମାଡ଼ି ଆସିଲା । ରାଜା ଓ ପାରିଷଦଗଣ ସାଥୀ ହୋଇ ପ୍ରଥମ ରାଣୀଙ୍କ ଉଆସକୁ ଗଲେ । ସେମାନେ ଦେଖିଲେ ସିଂହାସନଟି ଝଲସି ଝଟକୁଛି । ସେଥିରେ ସଜାଇ ହୋଇଥିବା ହୀରାରୁ ଆଲୁଅ ବାହାରୁଛି । ଶହ ଶହ ଆଲୋକ ସମାରୋହରେ ତା ଉଜ୍ଜ୍ୱଳ ଉଠୁଛି । ତାପରେ ସେମାନେ ଦ୍ୱିତୀୟ ରାଣୀଙ୍କର ଉଆସକୁ ଆସିଲେ । ସେଠି ବି ସିଂହାସନ ଅପୂର୍ବ ଭାବରେ ସଜା ହୋଇଥିଲା । ସେଠୁ ସେମାନେ ସାନ ରାଣୀର ଉଆସକୁ ଆସିଲେ । ଯାହା ସେଠାରେ ଦେଖିଲେ, ସେଥିରେ ସେମାନେ ଅବାକ୍ । ସିଂହାସନରେ ହଜାର ହଜାର ଫୁଲ ଜଳୁଛି । ତାର ମହମହ ବାସ୍ନା ଚିତ୍ତକୁ ପୁଲକିତ କରୁଛି । ରାଣୀର ସିଂହାସନ ସଜା ଯେ ଉତ୍କୃଷ୍ଟ, ସେଥିରେ କାହାର ସନ୍ଦେହ ନଥିଲା । ରାଜା ସଭାସଦ୍ ସହ ପରାମର୍ଶ କଲେ । ରାଣୀକୁ ପାଟରାଣୀ କରି ଦେଲେ । ଏହା ଘୋଷଣା କରି ଦିଆଗଲା ।

ଏ କଥା ଶୁଣି ବଡ଼ ଦୁଇ ରାଣୀ ଈର୍ଷାରେ ଜଳିଗଲେ । ସେମାନଙ୍କର ଯୁକ୍ତି ଥିଲା—ସେମାନେ ଯେତେହେଲେ ରଜାଘରର

ହିଂଅ, ଶିକ୍ଷିତା । ଆଗ୍ଭର, ବ୍ୟବହାର ଓ ଭଦ୍ରାମୀରେ ସମକକ୍ଷ ହେବା ତ ଦୂରର କଥା, ସେମାନଙ୍କ ପାସଙ୍ଗରେ ରାଣୀ ପଡ଼ିବାର ପ୍ରଶ୍ନ ଉଠୁନାହିଁ । କାଲି ସେ ଜଙ୍ଗଲରେ ଅରକ୍ଷ ହୋଇ ବୁଲୁଥିଲା । ଧର୍‌ସା ହୋଇ ଆସିଛି । ସେ ପୁଣି ପାଟରାଣୀ ! ଏହା ଅସହ୍ୟ । ବରଦାସ୍ତ ଯୋଗ୍ୟ ନୁହଁ । ଉଭୟେ ଭାବିଲେ ଯେ ରାଣୀ ତାଙ୍କର ମିଳିତ ଶତ୍ରୁ । ସେ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କର ନିସ୍ତାର ନାହିଁ । ତାକୁ ଯେ କୌଣସି ପ୍ରକାରେ ଶେଷ କରିବାକୁ ହେବ ।

ସେମାନଙ୍କ ଉଆସକୁ ଲାଗି ଗୋଟିଏ ନଈ ବୋହିଯାଇଛି । ତା ବେଶ୍ ଗଭୀର । ସ୍ରୋତ ବି ଖୁବ୍ ପ୍ରଖର । ଦୁଇ ରାଣୀ କଥା-ବାର୍ତ୍ତା ହୋଇ ସ୍ଥିର କଲେ—ରାଣୀକୁ ସେ ନଈକୁ ପେଲି ଦେବେ । ଉଦ୍ଧାର କରିବାକୁ କେହି ନ ଥିବେ । ସେ ତ ପାଣିରେ ବୁଡ଼ି ମରିବ । ତାଙ୍କର କଣ୍ଟା ଯିବ ।

ଯାହା ସ୍ଥିର କରିଥିଲେ, ତାକୁ କାର୍ଯ୍ୟକାରୀ କରିବାକୁ ଦିନେ ସେମାନେ ରାଣୀକୁ ନଈ କୂଳକୁ ନେଇଗଲେ । ତାପରେ ନଈର ପାଣି କେତେ ଦେଖିବାକୁ ନଈ ଧାରରେ ଠିଆ ହେଲେ । ସେଠି ଦୁଇ ରାଣୀ ଯାକ ରାଣୀକୁ ନଈକୁ ଠେଲି ଦେଲେ । ରାଣୀଟି ଭାସି ଭାସି ଗଲା । ବଡ଼ ପାଟିରେ ଅଧୈର୍ଯ୍ୟ ହୋଇ ସେ ପାଟି କରୁଥିଲା । କେହି ଉଦ୍ଧାର କରିବାକୁ ନ ଥିଲେ । ସେ ପାଣିରେ ବୁଡ଼ିଗଲା । ଆମ କାଉଟି କେଉଁଠି ଥିଲା କେଜାଣି, ସେଠି ଆସି ହାଜର । ସେ ବଡ଼ ପାଟିରେ କା କା ଡାକିଲା । ଅଳ୍ପ ସମୟ ଭିତରେ ହଜାର ହଜାର କାଉ ଆସି ସେଠି ରୁଣ୍ଡ ହୋଇ ଗଲେ । ବୁଡ଼ି ଯାଉଥିବା ରାଣୀର ଲୁଗା ଭାସୁଥିଲା । ସେମାନେ

ଥଣ୍ଡରେ ଧରି ଟାଣି ଟାଣି କୂଳକୁ ଘେନି ଆସିଲେ । ସେଥିରେ ରାଣୀ କୂଳକୁ ଆସିଲା । ସେମାନଙ୍କର ଶୁଶ୍ରୂଷାରେ ତାର ଚେତା ଆସିଲା । କାଉକୁ ଦେଖି ରାଣୀର ସାହସ ଆସିଲା । ହେମାନେ କୁଡ଼ିଆଟିଏ ରାଣୀ ପାଇଁ କରିଦେଲେ । ସେ ଜାଗାଟି ରାଜଧାନୀଠାରୁ ବହୁତ ଦୂର । ସେଇଠି ରାଣୀ ରହେ । ଫଳମୂଳ କାଉମାନେ ଆଣି ଦିଅନ୍ତି । ତାକୁ ଖାଇ ଅତି ଦୀନହୀନ ଭାବରେ ଜୀବନ କଟାଏ ।

ରାଣୀକୁ ପାଣିକୁ ଠେଲିବା ପରେ ଦୁଇ ରାଣୀଯାକ କଚ୍ଛ ସମୟ ଅପେକ୍ଷା କଲେ । କଚ୍ଛ ବାଟ ଭାସି ଭାସି ଗଲାପରେ ରାଣୀ ପାଣିରେ ବୁଡ଼ିଗଲା । ଯାହାହେଉ କଣ୍ଟା ଗଲାବୋଲି ଆସ୍ୱସ୍ତିର ଏକ ଦୀର୍ଘ ନିଃଶ୍ୱାସ ସେମାନେ ପକାଇଲେ । ତାପରେ ଆସି ରାଜାଙ୍କ ପାଖକୁ ରାଣୀ ନଈରେ ପଡ଼ି ବୁଡ଼ିଗଲା ବୋଲି ଖବର ପଠାଇଲେ । ସେତବେଳକୁ ରାଜା ରାଜକାର୍ଯ୍ୟରେ ବ୍ୟସ୍ତ ଥିଲେ । ଏ ଖବର ଶୁଣି ସମସ୍ତ କାମ ଛାଡ଼ି ନଈ କୂଳକୁ ଧାଇଁଲେ । ମନ୍ତ୍ରୀ ପାରିଷଦ ବି ସେଠାକୁ ଆସିଲେ । କେଉଟମାନଙ୍କୁ ଡକାହେଲା । ନଈ ଭିତର ଯାକ ଖୁବ୍ ଖୋଜା ହେଲା । ରାଣୀର କଚ୍ଛ ପତ୍ତା ମିଳିଲା ନାହିଁ । ରାଜା ଏଇ ଦୁଃଖରେ ଭାଙ୍ଗି ପଡ଼ିଲେ । ରାଣୀକୁ ତ ସେ ଖୁବ୍ ଭଲ ପାଉଥିଲେ, ରାଣୀ ଚାଲିଯିବା ପରଠାରୁ ତାଙ୍କୁ ସବୁ ବିଷ ପରି ଲାଗିଲା । ସେ ବାରମ୍ବାର କହୁଥିଲେ—"ମୁଁ ତାକୁ ଏତେ ଭଲ ପାଏ ସେ ମୋତେ ଛାଡ଼ି ଯାଇପାରେନା ।"

ଦୁଇ ରାଣୀଯାକ ରାଜାଙ୍କର ତତ୍ତ୍ୱ ଖୁବ୍ ନିଅନ୍ତି । ରାଜାଙ୍କ ପାଇଁ ସେମାନେ ଖୁବ୍ ବ୍ୟସ୍ତ । ତାଙ୍କର ମନ ପରିବର୍ତ୍ତନ ପାଇଁ

ସେମାନେ ବହୁତ ଚେଷ୍ଟା କଲେ । କିନ୍ତୁ ସବୁ ବୃଥା । ମନ୍ତ୍ରୀଙ୍କୁ ରାଜ୍ୟ ଭାର ଦେଇ ଏବେ ରାଜା ରାଣୀଙ୍କୁ ଖୋଜିବାକୁ ବାହାରିଗଲେ ।

ନଈରେ ରାଣୀ ତ ବୁଡ଼ି ଯାଇଛି । ଏକଥା ତ ରାଜା ଜାଣିଥିଲେ । ତେଣୁ ନଈ କୂଳେ କୂଳେ ସେ ଯାତ୍ରା କଲେ । ପୂରା ବର୍ଷଟିଏ ଚାଲିଗଲା । ରାଜା ତାଙ୍କ ଚାଲି ବନ୍ଦ କରି ନାହାନ୍ତି । ଖିଆପିଆ ବି ନାହିଁ । ସେତେବେଳକୁ ସେ ଖୁବ୍ କ୍ଳାନ୍ତ । ଅବସନ୍ନ । ଦୁର୍ବଳ । ହଠାତ୍ ତାଙ୍କ କାନରେ ଏକ ମଧୁର ଗୀତ ପଡ଼ିଲା । ସେ କାନ ଦେଇ ଶୁଣିଲେ । ଏ ଯେ ତାଙ୍କ ରାଣୀର ସ୍ୱର, ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ସେ ଆଖିବୁଜି ଗୀତ ଭାସି ଆସୁଥିବା ଜାଗାକୁ ଧାଇଁଲେ ।

ସେ ଏକ କାଠ କୁଡ଼ିଆ ପାଖରେ ପହଞ୍ଚିଗଲେ । ସେଠି ଦେଖିଲେ—ରାଣୀ ବସି ଦୁଃଖରେ ଗୀତ ଗାଉଛି । ରାଜା ରାଣୀକୁ, ରାଣୀ ରାଜାଙ୍କୁ ଦେଖି ଆନନ୍ଦରେ ବିଭୋର ହୋଇଗଲେ । ତାପରେ ଶାନ୍ତ ଓ ଧୀର ଭାବରେ ବସି କଥାବାର୍ତ୍ତା କଲେ । ତାଙ୍କୁ କପଟରେ ଦୁଇ ରାଣୀ ନଈ କୂଳକୁ ନେଲେ, ସେଠି କପଟରେ ପାଣିକୁ ଠେଲି ଦେଲେ, କାଙ୍କମାନେ ତାଙ୍କୁ କପଟରୁ ରକ୍ଷା କଲେ—ସେ ସବୁ କଥା ରାଣୀ ରାଜାଙ୍କୁ ଗୋଟି ଗୋଟି କରି କହିଲା ।

ତା'ପର ଦିନ ସେମାନେ ରାଜଧାନୀକୁ ଯାତ୍ରା କଲେ । ରାଜ ପ୍ରାସାଦରେ ପହଞ୍ଚି ରାଜା ବଡ଼ ରାଣୀ ଦୁଇଜଣଙ୍କୁ ଡକାଇଲେ । ସେମାନଙ୍କୁ ଅତି କଠୋର ଭାବରେ ରାଜା ପ୍ରଶ୍ନ କଲେ—"ତୁମେ ପାଟରାଣୀକୁ କାହିଁକି ନଈକୁ ଠେଲି ଦେଲ ?"

ରାଣୀ ଦୁଇ ଜଣ ନିରୁତ୍ତର । ଭୟରେ ଖାଲି ଥରୁଥାନ୍ତି । ସେମାନଙ୍କୁ ଖାଲି ଆଶ୍ଚର୍ଯ୍ୟ ଲାଗୁଥାଏ ଯେ ରାଣୀ କିପରି ବଞ୍ଚିପାରିଲା ।

କୌଣସି ଉତ୍ତର ନ ଦେବାରୁ ରାଜା ଖୁବ୍ ରାଗିଗଲେ । ରାଣୀ ଯାହା କହୁଥିଲେ, ତାହା ସତ୍ୟ । ଏଥିରେ ରାଜାଙ୍କର ଦୃଢ଼ବୋଧ ହେଲା ।

ଦୁଇ ରାଣୀଙ୍କୁ ମୃତ୍ୟୁଦଣ୍ଡ ଦେବାକୁ ରାଜା ଆଦେଶ କଲେ । ତାହାହିଁ ପାଳନ ହେଲା ।

ସେଇଦିନୁ ରାଣୀ ସହିତ ରାଜା ସୁଖରେ ଜୀବନ ଯାପନ କଲେ ।

କୌଣସି କଥା ଲୁଚେ ନାହିଁ । ଯେ ଯାହା କରେ, ସେଥିପାଇଁ ତାର ଦଣ୍ଡ ଥୁଆ ହୋଇଛି ।

———

## ତିନ ଅନ୍ଧ

ତ୍ରେଗାମ କୁଣ୍ଡ ହିନ୍ଦୁମାନଙ୍କର ଗୋଟିଏ ତୀର୍ଥସ୍ଥାନ । ଏହା କାଶ୍ମୀର ଉପତ୍ୟକାର ପଶ୍ଚିମାଞ୍ଚଳରେ ଅବସ୍ଥିତ ।

ଏହି ପବିତ୍ର କୁଣ୍ଡକୁ ଲାଗି ଗୋଟିଏ ଶିବ ମନ୍ଦିର । ତାର ତଳ ଅଂଶ ପଥରରେ । ଉପର ଅଂଶଟି କିରାସିନ ଟିଣରେ ତିଆରି । ମନ୍ଦିରର ଠିକ୍ ମଝିରେ କଳା ମୁଗୁନି ପଥରର ଶିବଲିଙ୍ଗ । ତାଙ୍କ ସମ୍ମୁଖପଟେ ଘିଅ ବା ତେଲ ଦୀପ ଜଳେ । ତାହା ମନ୍ଦିର ଭିତରକୁ ଆଲୋକିତ କରେ ।

ସେଠି ଶିବ ଦର୍ଶନ ପାଇଁ ସକାଳେ ଭିଡ଼ ହୁଏ । ଲୋକମାନେ ଗୋଟିଏ ଧାଡ଼ିରେ ଯାଇ ଦର୍ଶନ କରନ୍ତି । ତେଣୁ ଠେଲା ଠେଲି ହେବାର ପ୍ରଶ୍ନ ଉଠେ ନାହିଁ ।

ସେଠି ଲୋକମାନେ ଭୋଗରାଗ କରନ୍ତି । ତା'ଛଡ଼ା ବିଭିନ୍ନ ପ୍ରକାରର ଜିନିଷ ଶିବଙ୍କୁ ଉତ୍ସର୍ଗ କରାଯାଇଥାଏ । ଠାକୁରଙ୍କୁ କି ପଇସା କମ ଦିଆହୁଏ ନାହିଁ । ଫଳରେ ଶିବ ପୂଜକଙ୍କର ଆନନ୍ଦରେ ଚଳିବାରେ କିଛି ଅସୁବିଧା ହୁଏ ନାହିଁ ।

ବହୁଦିନ ତଳେ ସେଇ ଶିବଙ୍କର ମହେଶ ବୋଲି ଜଣେ ପୂଜକ ଥିଲା । ସେ ବଡ଼ ଭୋରରୁ ଉଠେ । ନିତ୍ୟକର୍ମ ସାରେ । ଚନ୍ଦନ ଘୋରେ । ସେଥିରୁ ମେଞ୍ଚେ ତାର କପାଳରେ ଟେସି ବୋଳେ । ତାପରେ ମନ୍ଦିରକୁ ବାହାରି ପଡ଼େ । ସେଠି ଦିନଯାକ ରହେ । ସନ୍ଧ୍ୟାକୁ ଘରକୁ ଆସେ । ଯାହା ତାକୁ ଦକ୍ଷିଣା ଓ ଦାନ ମିଳେ, ତାକୁ ଧରି ଘରକୁ ଫେରେ ।

ଦିନକର କଥା । ସେଦିନ ବଡ଼ ଭୋରରୁ ସେ କି ମନ୍ଦିର ପାଖରେ ପହଞ୍ଚି ଯାଇଥିଲା । ସେଠି ସେ ଦେଖିଲା—ସେ ଅଞ୍ଚଳର ସବୁଠାରୁ ବଡ଼ ଜମିଦାର ସେଠି ଉପସ୍ଥିତ ଅଛନ୍ତି । ଆଜି କେହି ଭକ୍ତ ଗଡ଼ ନାହାନ୍ତି । ତାକୁ ତାହା ଆଶ୍ଚର୍ଯ୍ୟ ଲାଗିଲା । ସେ ଜମିଦାରଙ୍କ ପାଖକୁ ଯାଇ ଆଶୀର୍ବାଦ କଲା । ଜମିଦାର କହିଲେ—"ମୁଁ ଅପୁତ୍ରିକ । ମୋର ପୁଅଟିଏ ଦରକାର । ତୁମେ ଗୋଟିଏ ବିଶେଷ ପୂଜା କରିବ । ଯାହା ଖର୍ଚ୍ଚ ହେବ, ମୋଠାରୁ ନେଇଯାଅ ।"

ମହେଶ କହିଲା—"ଏଥିପାଇଁ ଶହେ ଟଙ୍କା ଦରକାର । ପୂଜା ସାମଗ୍ରୀ କିଣିବାକୁ ଓ ମୋର ପାରିଶ୍ରମିକ ପାଇଁ ମୁଁ ସେଥିରୁ ପଞ୍ଚସ୍ତରି ଟଙ୍କା ନେବି । ଆବଶିଷ୍ଟ ପଚିଶ ଟଙ୍କା ଭିକାରୀଙ୍କୁ ଦିଆଯିବ ।"

ଜମିଦାର ମୂଲେଇ କଲେ ନାହିଁ । ଟଙ୍କା ଥଳି ଖୋଲିଲେ । ସେତେବେଳେ ତ ନୋଟର ଏତେ ପ୍ରଚଳନ ନ ଥିଲା । ସେଥିପାଇଁ ଖାଲି ଟଙ୍କା ଶହେଟା ଗଣି ଦେଲେ । ଦର୍ଶନ କରି ସେ ଫେରି ଗଲେ ।

ମହେଶ ତାର ହେତୁ ହେଲାଦିନୁ ଦେଉଳକୁ ଆସୁଛି । ବହୁ ବଡ଼ବଡ଼ଆଙ୍କର ପୂଜା କରିଛି । କିନ୍ତୁ କେହି କେବେ ତାକୁ ଶହେ ଟଙ୍କା ଦେଇ ନାହାନ୍ତି । ଆଜି ତାର ପରମ ଭାଗ୍ୟ । ସେ ଏକକାଳୀନ ଶହେ ଟଙ୍କା ପାଇଛି । ସେ ତ ଖାଲି ଖୁସି ହେଉ ନ ଥିଲା । ଏ ଟଙ୍କାକୁ ତାର ସ୍ତ୍ରୀକୁ ଦେଇ ଖୁସି କରାଇବାକୁ ତାର ଭାରି ଇଚ୍ଛା । ସେଥିପାଇଁ ତର ତର ହୋଇ ପୂଜା ସବୁ ସାରି ଦେଲା । ଉପରବେଳା ସେଠାକୁ ଭକ୍ତ ଆସନ୍ତି ନାହିଁ । ତେଣୁ ଦିନ ଥାଉ ଥାଉ ସେ ଦିନ ଘରକୁ ବାହାରି ପଡ଼ିଲା ।

ବାଟରେ ଗୋଟିଏ ଅନ୍ଧକୁ ଦେଖିଲା । ସେ ହାତ ବଢ଼ାଇ ମାଗୁଥିଲା । ମହେଶ ଯିବା କଥା ଜାଣି ତାକୁ କିଛି ଦାନ କରିବାକୁ ପ୍ରାର୍ଥନା କଲା । ମହେଶ ଭାବିଲା—ଜମିଦାରଙ୍କଠାରୁ ଦାନ ପାଇଁ ପଚିଶ ଟଙ୍କା ଆଣିଛି । ତାକୁ ସେ ଦାନ ନିଶ୍ଚୟ କରିବ । କିନ୍ତୁ ବହୁ ଭିକାରୀ ମଧ୍ୟରେ ବାଣ୍ଟିଦେଲେ, ସବୁଦିନ ଭଳି ସେମାନେ କିଛି

କାହୁଁ ପଇସା ପାଇବେ । ମନରେ ତାଙ୍କର କାହୁଁ ଭାବନା ଆସିବ ନାହିଁ । କିନ୍ତୁ ଜଣେ ଭିକାରୀ ଯଦି ପଚିଶ ଟଙ୍କା ପାଏ, ସେ ଏତେ ଖୁସି ହୋଇଯିବ ଯେ, ତା କଳ୍ପନା କରିହେବ ନାହିଁ । ସେ ଏ କଥା ହିଁ ଜୀବନ ଯାକ ମନେ ରଖିବ । ସାଙ୍ଗେ ସାଙ୍ଗେ ମହେଶ ପଚିଶ ଟଙ୍କା ବାହାର କଲା । ଅନ୍ଧ ଭିକାରୀଟିର ଲମ୍ବି ଆସିଥିବା ହାତରେ ଯେତିକ ଦେଇ ଦେଲା । କହିଲା--"ଗଣ, କେତେ ଟଙ୍କା ଯେ ।"

ଭିକାରୀଟି ଗଣିଲା । ସେ ଦେଖିଲା—ପଚିଶ ଟଙ୍କା ତାକୁ ଭିକ୍ଷା ମିଳିଛି । ମୁହଁ ତାର ଉଜ୍ଜ୍ୱଳ ଉଠିଲା । ସେ ଆନନ୍ଦରେ ଗଦ୍ ଗଦ୍ ହୋଇ କହିଲା—"ଗୋସେଇଁ, ତମର କ'ଣ ହୋଇଛି ଯେ ତୁମେ ମୋତେ ଏତେ ଗୁଡ଼ାଏ ଟଙ୍କା ଦାନ କରିଦେଲ ! ଏ ତ ଦାନ ନୁହେଁ, ଋଣ । ଏ ଋଣ ମୁଁ ଏ ଜୀବନରେ ତମର ଶୁଝି ପାରିବ ନାହିଁ ।"

ମହେଶ କହିଲା— "ଆରେ ତୁ କ'ଣ ପଗାଳ ? ମୁଁ କଏ ଯେ ପଚିଶ ଟଙ୍କା ଦାନ କରିଦେବ ? ଆଜ ଜଣେ ଜମିଦାର ଆସିଥିଲେ । ମୋତେ ପୂଜା ପାଇଁ ପଞ୍ଚସ୍ତରି ଟଙ୍କା ଆଉ ଭିକାରୀକୁ ଦେବାକୁ ପଚିଶ ଟଙ୍କା ଦେଇଗଲେ । ମୁଁ ସେଇ ଟଙ୍କା ତତେ ଦେଉଛି ।"

ଭିକାରୀ ଭାବିଲା—ବ୍ରାହ୍ମଣଟି ବେଶ୍ ଭାଗ୍ୟବାନ । ତା ନ ହୋଇଥିଲେ, ଏତେ ଗୁଡ଼ାଏ ଟଙ୍କା ଆଜ ସେ ପାଇ ନ ଥାନ୍ତା । ଯେତିକ ଯେତିକ ଏଇ ଟଙ୍କା କଥା ସେ ଭାବିଲା, ବ୍ରାହ୍ମଣ ପାଖେ ଥିବା ପଞ୍ଚସ୍ତରି ଟଙ୍କା ପ୍ରତି ତାର ଲୋଭ ବଢିଲା । ସେ କହିଲା— "ଗୋସେଇଁ, ମୁଁ ଏତେ ଟଙ୍କା ଜୀବନରେ ଏକାଠି କେବେ ହାତରେ

ଧରି ନାହିଁ । ସେସବୁ ଟଙ୍କା ମୋତେ ଟିକଏ ଦୟାକରି ଦିଅ । ମୁଁ ହାତରେ ଧରେ । ତାପରେ ତୁମ ଟଙ୍କା ତୁମେ ନେଇଯିବ ।”

ବ୍ରାହ୍ମଣ ଭାବିଲା—ଅନ୍ଧ ଭିକାରୀ କଥାରେ ରାଜି ହେଲେ, ଭିକାରୀଟି ମନରେ ଆନନ୍ଦ ଆସିବ । କିନ୍ତୁ ତାର କିଛି କ୍ଷତି ହେବ ନାହିଁ । ସେ ସମୁଦାୟ ଟଙ୍କା ଭିକାରୀ ହାତକୁ ବଢ଼ାଇ ଦେଲା । ଭିକାରୀଟି ଆନନ୍ଦରେ ଟଙ୍କାକୁ ଏପଟ ସେପଟ କଲା । ଦୁଷ୍ଟ ବୁଦ୍ଧି ମନରେ ପଶିଲା । ଏ ସମସ୍ତ ଟଙ୍କା କିପରି ଅକ୍ତିଆର କରିବ, ସେଇଆ ସେ ଭାବୁଥିଲା । ମହେଶ କହିଲା—“ଡେରି ହେଉଛି, ମୋତେ ଟଙ୍କାତକ ଦିଅ । ମୁଁ ଯାଏଁ ।”

ଅନ୍ଧଟି ସବୁ ଶୁଣି କିଛି ନ ଶୁଣିଲା ପରି ରହିଲା । ସେ ଭାବୁଥିଲା—ସେ କ’ଣ କରିବ ? ବ୍ରାହ୍ମଣ ହାତରୁ ଖସିଯିବ ।

ମହେଶ ବିରକ୍ତ ହୋଇ କହିଲା—“କି ଆଶ୍ଚର୍ଯ୍ୟ କଥା ! ମୋ ଟଙ୍କା ଦେ । ଠିଆ ହୋଇଛୁ କାହିଁକି ? ଶୁଣି ନ ଶୁଣିଲା ପରି ହେଉଛୁ କାହିଁକି ?”

ଅନ୍ଧଟି ତଥାପି ନୀରବ । କାଠ ପରି ଠିଆ ହୋଇଥାଏ । ମନ ତାର ଗଣ୍ଠିର ଚିନ୍ତାରେ ବ୍ୟସ୍ତ ।

ମହେଶ ସମ୍ଭାଳି ପାରିଲା ନାହିଁ । ଅନ୍ଧ ହାତରୁ ଟଙ୍କାତକ ନେବାକୁ ସେ ହାତ ବଢ଼ାଇଲା । ଅନ୍ଧ ସେତିକିବେଳେ ଚିତ୍କାର କଲା—“ରକ୍ଷାକର । ରକ୍ଷାକର ।” ମହେଶ ଅନ୍ଧର ଏ ଢଙ୍ଗ ଦେଖି ଅବାକ୍ । ତା ତୁଣ୍ଡ ଖୋଲିବା ପୂର୍ବରୁ ସେଠାରେ ବହୁଲୋକ ରୁଣ୍ଡ ହୋଇ ଯାଇଥିଲେ । ଲୋକେ ପଚାରିଲେ “କଥା କ’ଣ ?”

ଭିକାରୀଟି କାନ୍ଦ କାନ୍ଦ କହିଲା—"ଭିକ ମାଗି ମାଗି ମୁଁ ଏତିକ ଟଙ୍କା ସଞ୍ଚୟ କରିଛି । ଏହାକୁ ଏମିତି ଗଣୁଥିଲି । ଏ ବାବୁ ଆସି ମୋଠାରୁ ସବୁ ଟଙ୍କା ଛଡ଼ାଇ ନେବାକୁ ବସିଛନ୍ତି ।"

ମହେଶ ସବୁକଥା କହି ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କଲା । କିନ୍ତୁ ସଂସାରର ଗତି ବିଚିତ୍ର । ଶ୍ରେଷ୍ଠ ଆଉ ତଳ ଶ୍ରେଣୀର ଲୋକଙ୍କ ପ୍ରତି ସମସ୍ତଙ୍କର ସହାନୁଭୂତି ଥାଏ । ସେ ସରଳ, ନିଷ୍କପଟ ଓ ହୀନ ଚରିତ୍ରର ବହୁ ଦୂରରେ, ଏକଥା ସମସ୍ତଙ୍କର ଧାରଣା । ଉପରିସ୍ଥ ଲୋକ ସାଧୁ ଓ ସଚ୍ଚୋଟ ହେଲେ ବି ସେମାନେ ତାକୁ ବିଶ୍ୱାସ କରନ୍ତି ନାହିଁ । ତଳ ଶ୍ରେଣୀର ଲୋକଙ୍କ କଥାକୁ ବେଶି ଓଜନ ଦିଆଯାଏ । ସେଇଆ ଏଠି ହେଲା । ସମସ୍ତେ ଅନ୍ଧ ଭିକାରୀଟିକୁ ବିଶ୍ୱାସ କଲେ । ମହେଶକୁ ଛି ଛି କଲେ । ବହୁତ କହିଲେ—"ଆମକୁ ଠକିବାକୁ ଆଉ ଉଦ୍ୟମ କର ନାହିଁ । ତୁମେ ଶିବ ପୂଜକ । ଏପରି ହୀନ କାମ କରିବାକୁ ତୁମେ କିପରି ପ୍ରୟାସ କଲ ? ଏହା ଦେଖି ଆମକୁ ଦୁଃଖ ଲାଗୁଛି ।"

ଜନଗହଳ ବିରୁଦ୍ଧରେ ଯିବାକୁ ମହେଶର ସାହସ ହେଲା ନାହିଁ । ସେ କାନ୍ଦ କାନ୍ଦ ଘରକୁ ଫେରିଲା ।

ସ୍ତ୍ରୀ ତା'ଠୁଁ ସବୁକଥା ଶୁଣି କହିଲା—"ଏଇଥିପାଇଁ କାନ୍ଦ ? ଆଜ ଜମିଦାର ଆସି ନ ଥାନ୍ତେ, ଟଙ୍କାତକ କ'ଣ ମିଳିଥାନ୍ତା ? ଧରିନିଅ ସେ ଆସି ନାହାନ୍ତି । ତେଣୁ ତୁମ ପାଖକୁ ଟଙ୍କା ଆସି ନାହିଁ । ତାହାହେଲେ ଚିନ୍ତା କରିବାର ଅବକାଶ କାହିଁ ? ତା'ଛଡ଼ା ସବୁ ଭଗବାନଙ୍କ ଦୟା । ସେ ଦୟା କଲେ ବୋଲି ଟଙ୍କା ମିଳି-

ଥିଲା । ତାଙ୍କ ଦୟାରେ ସେ ଟଙ୍କା ଚାଲିଗଲା । ପୁଣି ଦୟା କଲେ ଟଙ୍କା ଆସିବ । ଏଥିପାଇଁ ବ୍ୟସ୍ତ ହୁଅ ନାହିଁ ।''

ମହେଶ ମନକୁ ବୁଝାଇଲା । ଶେଷକୁ ଧୈର୍ଯ୍ୟ ଧରିଲା । ତାପରେ କିଛି ସମୟ ଗଲା ବିତି । ସ୍ତ୍ରୀ ତାର କହିଲା—"ଅନ୍ଧଟା ତମକୁ ଠକି ଦେଲା । ଅନ୍ଧକୁ ଠକିବା ଅତି ସହଜ । ତୁମେ ଅନ୍ଧକୁ ଅନୁସରଣ କର । ଯେଉଁଠି ଟଙ୍କା ରଖିବ, ସେଠୁ ଘେନି ଆସିବ । ସେ କିଛି ଜାଣିପାରିବ ନାହିଁ ।''

ମହେଶ ଆଉ ଡେରି କଲା ନାହିଁ । ଅନ୍ଧକୁ ଖୋଜି ବୁଲିଲା । ଅନ୍ଧକୁ ସେ ଭେଟିଲା । ସେତିକିବେଳୁ ଅନ୍ଧ ପଛେ ପଛେ ଛାଇ ଭଳି ସେ ଲାଗି ରହିଲା ।

ସନ୍ଧ୍ୟା ହେବାରୁ ଅନ୍ଧ ଗୋଟିଏ କୁଡ଼ିଆ ପାଖକୁ ଆସିଲା । ସେ କୁଡ଼ିଆ ଭିତରକୁ ଗଲା । ପଛେ ପଛେ ତାର ମହେଶ । ସେ ଘରେ ଆଉ ଜଣେ ରହୁଥାଏ । ସେ ବି ଅନ୍ଧ । ଏ ଅନ୍ଧଟି ତାକୁ ଭାଇ ବୋଲି ସମ୍ବୋଧନ କଲା । ତାପରେ କହିଲା —''ଆଜି ମୁଁ ଶହେ ଟଙ୍କା ରୋଜଗାର କରିଛି । ଏତେଗୁଡ଼ାଏ ଟଙ୍କା ପାଖରେ ରଖିବାକୁ ମୋର ଭୟ ହେଉଛି । କ'ଣ କରିବ କହିଲୁ ?''

ଅନ୍ୟ ଜଣକ ଆଶ୍ଚର୍ଯ୍ୟ ହୋଇ କହିଲା— "ତୁ ଏତେଗୁଡ଼ାଏ ଟଙ୍କା କେଉଁଠୁ ପାଇଲୁ ?''

ଅନ୍ଧଟି ତା ଭାଇ ପାଖକୁ ଲାଗି ଯାଇ ଫୁସଫୁସ କରି ସବୁ କଥା କହିଲା । ଭାଇ ତାର ଏ କଥା ଶୁଣି ଅସନ୍ତୁଷ୍ଟି ବୋଧ କଲା । କହିଲା—"ହଇରେ, ତୁ ଯାହା କଲୁ, ଭଲ କାମ କଲୁ ନାହିଁ ।

ତୋତେ ସେ ପଚାଶ ଟଙ୍କା ଦେଉଥିଲି । ତୁ ସବୁ ମାରି ଆଣିଲୁ ! ଯାହାହେଉ ଆଣି ତ ପାରିଲୁଣି । ମୋ ଲମ୍ବା କୋଟଟା ସବୁବେଳେ ପିନ୍ଧେ । ସେଇ କୋଟର ପକେଟରେ ରଖିଦେ । ଏହା ସବୁଠାରୁ ନିରାପଦ ଜାଗା । ସେଠୁ ହଜିବାର ସମ୍ଭାବନା ଜମା ନାହିଁ ।"

ଇକାଲାଜିର ମୁହଁରେ ଆଶଙ୍କା ଭାବ । ସେ ସମ୍ଭବତଃ ତା ଭାଇକୁ ବିଶ୍ୱାସ କରିପାରୁ ନ ଥିଲା । ସବୁଯାକ ଟଙ୍କା ତାର ହାତ-ଛଡ଼ା କରିବାକୁ ସେ ପ୍ରସ୍ତୁତ ନ ଥିଲା । ତେଣୁ ସେ ଟଙ୍କାତକ ଗଣିଲା । ସେଥିରୁ ଷାଠିଏଟି ଟଙ୍କା ନିଜ ପକେଟରେ ରଖିଲା । ଅବଶିଷ୍ଟ ଟଙ୍କାତକ ନେଇ ଭାଇର ପକେଟରେ ରଖିଦେଲା । ତାପରେ ସେ ଯାଇ ତଳେ ଲମ୍ବ ହୋଇ ଶୋଇଗଲା ।

ନମାଜ ପଢ଼ିବା ବେଳ ହେଲା । ଭାଇ ତାର ମସ୍‌ଜିଦ୍‌କୁ ଗଲା । ସେଠିତ ଲୋକଙ୍କର ବହୁତ ଗହଳି । ସେ ସେଠି ଠେଲି ଠାଲି ପଶିଲା । ଆଣ୍ଠୁ ପକାଇ ବସି ସେଠି ପ୍ରାର୍ଥନା କଲା । ମହେଶ ତାର ପଛେ ପଛେ ଯାଉଥିଲା । ତାକୁ ଲାଗିକରି ଆଣ୍ଠୁ ପକାଇ ବସିଲା । ଯେତେବେଳେ ଅଲଟି ପ୍ରାର୍ଥନାରେ ବ୍ୟସ୍ତ ରହିଲା, ମହେଶ ଆସ୍ତେକରି ଯେଉଁ ଥଳିରେ ଟଙ୍କା ଅଛି ରଖିଥିଲା, ସେଇଟି ତା ପକେଟରୁ ଉଠାଇ ଆଣିଲା । ପ୍ରାର୍ଥନା ସରିଲା । ସମସ୍ତେ ବାହାରିଲେ । ଅଲଟି ପକେଟ ଅଣ୍ଡାଳି ଦେଖିଲା ଯେ ଟଙ୍କା ଥଳିଟି ତାର ନାହିଁ । ସେ ମୌଲବୀଙ୍କ ପାଖକୁ ଗଲା । ତାଙ୍କ ପାଖରେ ଆପତ୍ତି କଲା । ମୌଲବୀ କହିଲେ—"ବୋକା ଲୋକମାନେ ଟଙ୍କା ଧରି ଦେହଳକୁ ଆସନ୍ତି । କିଏ ନେଲା, କିପରି ଜଣା ପଡ଼ିବ ? ନିଜ ଭାଗ୍ୟକୁ ଆଦର ଫେରିଯାଅ ।"

ବଡ଼ଭାଇ ଅନ୍ଧଟି ସେଠୁ କାନ୍ଦ କାନ୍ଦ ଆସିଲା । ଘରେ ପଶୁଣୁ ସେ କାନ୍ଦିଲା । ତା କାନ୍ଦ ଦେଖି ପ୍ରଥମ ଅନ୍ଧଟି ବି କାନ୍ଦିଲା । କିଛି ସମୟ ପରେ ବଡ଼ ଭାଇ ଆସି ପହଞ୍ଚିଲା । ସେ ବି ଅନ୍ଧ । ସେ ଉଭୟଙ୍କୁ ସାନ୍ତ୍ୱନା ଦେଲା । କଥା କ'ଣ ଜାଣିବାକୁ ଚାହିଁଲା । ମଝିଆ ଅନ୍ଧ ଭାଇଠାରୁ ସବୁ କଥା ଶୁଣିଲା । ବଡ଼ ଭାଇ ସାନ ଭାଇକୁ କହିଲା— "ଆରେ ତୁ କ'ଣ କହୁଛୁ ?"

ପ୍ରଥମ ଅନ୍ଧଟି କହିଲା—"ମିଛ କହି ଜଣକୁ ମୁଁ ସର୍ବସ୍ୱାନ୍ତ କଲି । ଅଥଚ ଟଙ୍କା ସବୁ ବାଏଁ ବାଏଁ ଉଡ଼ି ଯାଉଛି । ଆଉ ଷାଠିଏ ଟଙ୍କା ଅଛି । ତାକୁ କେମିତି ରଖିବି, ସେଇଟା ମୋର ଚିନ୍ତା ।"

ବଡ଼ ଭାଇ କହିଲା—"ସେ ଟଙ୍କା ଆଣ । ତାକୁ ଗୋଟିଏ କନା ମୁଣିରେ ରଖ । ସେ ମୁଣିକୁ କୋଠ ଭିତର ପଟେ ସିଲେଇ କରିଦେବି । ତାକୁ କେହି ନେଇ ପାରିବେ ନାହିଁ ।" ଯାହା କହିଲା, ସେଇଆ ବି କଲା । ମହେଶ ସେ ଘରେ ଠିଆ ହୋଇ ସବୁ ଦେଖୁଥାଏ ।

ତିନିଭାଇ ଯାକ ଶୋଇବାକୁ ଗଲେ । ମହେଶ ବାହାରକୁ ଆସିଲା । ଗୋଟିଏ ପିମ୍ପୁଡ଼ି ଭରା ଖୋଳ ପାଇଲା । ସେଠି ଗୋଟେ ବୋତଲରେ କିଛି ମିଠା ରଖି ଥୋଇଦେଲା । ମୁହୂର୍ତ୍ତେ ଯାଇନ ସେଇ ବୋତଲଟା ପିମ୍ପୁଡ଼ିରେ ପୂରିଗଲା । ଠିପିଟା ଦେଇ ମହେଶ ଧାଇଁଲା ଅନ୍ଧଙ୍କ କୁଡ଼ିଆକୁ । ସେଠି ପିମ୍ପୁଡ଼ି ଭରା ବୋତଲକୁ ବଡ଼ ଭାଇ କୋଠ ପାଖରେ ଖୋଲି ଦେଲା । ବଡ଼ ଭାଇ ଯାଏ କୁଆଡେ ? ପିମ୍ପୁଡ଼ିମାନେ ତାକୁ କାମୁଡ଼ି ଅସ୍ତବ୍ୟସ୍ତ କଲେ । ସେ ଖୁବ୍ ଗଡ଼ିଲା ।

ବାପଲୋ ବୋଉଲୋ ଚିତ୍କାର କଲା । ଶେଷକୁ କୋଟ କାଢ଼ି ଫିଙ୍ଗି ଦେଲା । ମହେଶ ସେଠି ଅପେକ୍ଷା କରୁଥିଲା । ବିଳମ୍ବ ନ କରି କୋଟ ଭିତରୁ ଗ୍ରେଟ ମୁଣିଟିକୁ ଉଡ଼ ଟୁଣ୍ଡାଇ ଅାଣିଲା । ତାପରେ ଚମ୍ପଟ ମାରିଲା ତା ଘରକୁ ।

ଅନ୍ଧଟିର ଟଙ୍କା କଥା ମନେ ପଡ଼ିଲା । ସେ କୋଟକୁ ଅଣ୍ଡାଳି ଦେଖିଲା ଯେ ସେଥିରେ ଟଙ୍କା ମୁଣିଟା ନାହିଁ । ସେ ଚିତ୍କାର କଲା । ଅନ୍ୟ ଭାଇମାନେ ଉଠିଲେ । ସବୁକଥା ଶୁଣିଲେ । ସମସ୍ତେ ରାଗରେ ଜଳୁଥାନ୍ତି । ସିଧା ଯାଇ ଗାଁର ମୁଖିଆ ପାଖରେ ହାଜର ହୋଇ ଗଲେ । ତାଙ୍କର ପ୍ରାର୍ଥନା ଥିଲା—ତାଙ୍କର ଟଙ୍କା ଯେ ଚୋରି କରି ନେଇଛି, ତାକୁ ଧରାପଡ଼ । (ଧରାଯାଉ)

ବହୁ ଅନୁସନ୍ଧାନ ହେଲା, କିଛି ଜଣା ପଡ଼ିଲା ନାହିଁ । ଜଣେ ଅନ୍ଧମାନଙ୍କ ପିଛା ଧରି ଏକଥା କରିଛି, ଏଥିରେ ସନ୍ଦେହ ନ ଥିଲା । ଅନ୍ଧଗୁଡ଼ିକ ଗରିବ । ପୁଣି ଉଦାସୀ । ଦୟା ନ କରି ନିର୍ଦ୍ଦୟ ହେବା ଏକ ସ୍ୱାଭାବିକ କଥାର ବ୍ୟତିକ୍ରମ । ସେଥିପାଇଁ ନମ୍ବରଦାର (ଗାଁ ମୁଖିଆ) ଢେଙ୍ଗୁରା ଦେଇ ଜଣାଇ ଦେଲେ ଯେ ଚୋର ଯଦି ଆତ୍ମ ସମର୍ପଣ କରେ, ତାକୁ କ୍ଷମା ଦିଆଯିବ ।

ପରଦିନ ମହେଶ ନମ୍ବରଦାରଙ୍କ ପାଖକୁ ଆସିଲା । ସବୁକଥା କହିଲା । କଥାର ସତ୍ୟାସତ୍ୟ ଜାଣିବା ପାଇଁ ଅନ୍ଧ ତିନିଜଣଙ୍କୁ ଡକରା ହେଲା । ଅନ୍ଧମାନେ ମହେଶ ଯାହା କହିଥିଲା, ତାକୁ ସ୍ୱୀକାର କଲେ ।

ସମସ୍ତେ ମହେଶ ସ୍ତ୍ରୀର ବୁଦ୍ଧିକୁ ତାରିଫ କଲେ । ନମ୍ବରଦାର ମହେଶକୁ ଧନ୍ୟବାଦ ଦେଲେ ।

ଗାଁରେ ଗୋଟିଏ ହଙ୍ଗା ହେଲା । ସେଠି ସମସ୍ତେ ମହେଶଙ୍କୁ ନମ୍ବରଦାରର ଉତ୍ତରାଧିକାରୀ ଭାବରେ ବାଛିଲେ ।

ଅନ୍ୟମାନଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ସେମାନଙ୍କୁ ଜେଲକୁ ପଠାଇ ଦିଆଗଲା ।

ଯେ ଦୋଷ କରେ, ଦିନେ ନା ଦିନେ ସେ ଧରା ପଡ଼ିବ । କେହି କେବେ ଖସି ଯିବେନି ।



# ଅମୂଲ୍ୟ ଉପଦେଶ

କାହିଁ କେତେକାଳର କଥା, କହି ହେବ ନାହିଁ । ଜଣେ ରାଜା ଠିକଏ ଓଡ଼ିଶରେ ସିଂହାସନ ଆରୋହଣ କଲେ । ସେତେବେଳକୁ ସେ ଜଣେ ଋଷିଙ୍କର ଭକ୍ତ ହୋଇ ସାରିଥିଲେ । ଉଆସରେ ଗୋଟିଏ ମନ୍ଦିର ଅଛି । ଏହାର ଘେର ସୁନାରେ ଗୁଡ଼ଣି ହୋଇଛି । ଏହାକୁ 'ମହାରାଜା କା ମନ୍ଦିର' ବୋଲି ଲୋକେ କୁହନ୍ତି । ଯୁଗ ଯୁଗ ଧରି କାଶ୍ମୀର ରାଜା ଓ ତାଙ୍କ ପରିବାରର ଏଇ ମନ୍ଦିର ବୋଲି ପରିଗଣିତ ହୁଏ ।

ନୂଆ ରାଜାଙ୍କ ଆଦେଶରେ ମହାରାଜା କା ମନ୍ଦିର ପାଖରେ ଘରଟିଏ ତୋଳା ହେଲା । ଋଷିଙ୍କୁ ଆଣି ରାଜା ସେଠାରେ

ରଖିଲେ । ପ୍ରତିଦିନ ସନ୍ଧ୍ୟାବେଳେ ରାଜା ସେଠାରେ ଭଜେ କରନ୍ତି । ଅଳ୍ପ କେତୋଟି ମୁହୂର୍ତ୍ତ ଗୁରୁଙ୍କ ପାଖରେ ରହି ପୁଣି ଚାଲି ଆସନ୍ତି । ସେଇ ସମୟରେ ସେ ଗୁରୁଙ୍କର ଭଲ ପରାମର୍ଶ ଗ୍ରହଣ କରନ୍ତି । ଋଷି ଯାହା କହୁଥିଲେ, ରାଜା ତାକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ।

ଦିନେ ରାଜା ଋଷିଙ୍କ ଘରେ ପହଞ୍ଚି ଦେଖିଲେ ଋଷି ବଡ଼ ମ୍ରିୟମାଣ ହୋଇ ବସିଛନ୍ତି । ଆଖିରେ ତାଙ୍କର ଲୁହ ଢଳ ଢଳ । ଗଡ଼ିବାକୁ ଯାହା କିଛି ବାକି ଅଛି । ରାଜା ଏକଥା ଦେଖି ଚମକି ପଡ଼ିଲେ । ସେ ଋଷିଙ୍କୁ ବ୍ୟସ୍ତ ହୋଇ ଏହାର କାରଣ ପଚାରିଲେ । ଋଷି କହିଲେ—"ବାବା, ଭଲ ଦିନ କାଳ ସରି ଆସିଲା । ଏଥର ଭୟଙ୍କର ବିପଦ । ସ୍ୱରଆଡ଼େ ତମକୁ ତାହା ଘେରି ରହିଛି । ତୁମର ମନ୍ତ୍ରୀମାନେ ଓ ସେନାପତିମାନେ ଗୁପ୍ତ ମନ୍ତ୍ରଣା କରିଛନ୍ତି । ସେଇ ଷଡ଼ଯନ୍ତ୍ର ଫଳରେ ତୁମେ ଗାଦିଚ୍ୟୁତ ହେବ । ତମକୁ ହତ୍ୟା କରିବାକୁ ସେମାନେ ଦୃଢ଼ ପ୍ରତିଜ୍ଞ । ବେଳ ଥାଉ ଥାଉ ତୁମେ ହୁସିଆର ହୁଅ । ଛଦ୍ମବେଶରେ ଏଠୁ ଆଜ ଲୁଚି ପଳାଅ । ସାଥିରେ ଯେତେ ପାର ସୁନା ଧନ ରତ୍ନ ଓ ଟଙ୍କା ନେବାର କଥା, ନେଇ ଯାଅ । କିନ୍ତୁ ହୁସିଆର, ଏକଥା କେହି ଯେପରି ଜାଣି ପାରିବେ ନାହିଁ । ଏଇ କାଗଜ ଖଣ୍ଡିକ ନିଅ । ଏଥିରେ ଉପଦେଶ ସବୁ ଲେଖାଅଛି । ତାହା ରତ୍ନ ସ୍ୱରୂପ । ଏହାକୁ ହଜାଇବ ନାହିଁ । ଯେତେବେଳେ ସମୟ ପାଇବ ଦେଖୁଥିବ । ଉପଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିବ । ବ୍ୟତିକ୍ରମ କରିବ ନାହିଁ । ଭଗବାନ ତୁମକୁ ଆଶୀର୍ବାଦ କରନ୍ତୁ । ତମର ମଙ୍ଗଳ ହେଉ । ତୁମେ ଦୀର୍ଘଜୀବୀ ହୁଅ । ବିଳମ୍ବ କର ନାହିଁ । ବିଦା ହେଉ ।"

ଗୁରୁଙ୍କଠାରୁ ବିଦାୟ ନେଇ ରାଜା ଆସିଲେ । ମନ ତାଙ୍କର ଶାନ୍ତଶାନ୍ତ । ଗୁରୁଙ୍କର ଆଦେଶ ଅମାନ୍ୟ କରିବାର ପ୍ରଶ୍ନ ଉଠୁ ନ ଥିଲା । ସେ ସିଧା ରାଜପ୍ରାସାଦକୁ ଆସିଲେ । ହୀରା, ନୀଳା, ମୋତି, ମାଣିକ୍ୟ ଯାହା ସବୁ ତାଙ୍କ ପାଖରେ ଥିଲା, ତାକୁ ଗୋଟିଏ ମୁଣିରେ ପୂରାଇଲେ । ସେ ମୁଣିକୁ ଗୋଟିଏ ଲମ୍ବା କୋଟ ଭିତର ପଟେ ସିଲାଇ କଲେ । ଆଉ ଗୋଟିଏ ବ୍ୟାଗରେ କିଛି ସୁନା ଭର୍ତ୍ତି କଲେ । ତାକୁ ହାତରେ ଧରିଲେ । ସେଇ କୋଟଟି ପିନ୍ଧି ପାଦରେ ଚଟି ହଳେ ପୂରାଇ ସେ ବାହାରି ପଡ଼ିଲେ । ଯେ ତାଙ୍କୁ ଦେଖିବ, ତାଙ୍କୁ ସେ କେବେହେଲେ ରାଜା ବୋଲି ଭାବିବ ନାହିଁ । ସେ ଯେ ଜଣେ ସାଧାରଣ ପରିବ୍ରାଜକ, ଏହାହିଁ ତାର ଧାରଣା ହେବ ।

ରାତି ରାତି ସେ ଚାଲିଥାନ୍ତି । ସକାଳୁ ସକାଳୁ ଝେଲମ ନଦୀ କୂଳରେ ପହଞ୍ଚିଗଲେ । ଡେରି ନ କରି ନଈ ପାରି ହୋଇ ପଡ଼ିଲେ । ସକାଳୁ ସୂର୍ଯ୍ୟ ଦେଖିଲା ବେଳକୁ ସେ ରାଜଧାନୀର ବହୁଦୂରକୁ ଚାଲି ଯାଇଥିଲେ । ସେତେବେଳକୁ ସେ କ୍ଲାନ୍ତ, ଅବସନ୍ନ । ଦେହ ତାଙ୍କର ବିଶ୍ରାମ ଲୋଡ଼ୁଥାଏ । ସେ ସେଥିପ୍ରତି ଧ୍ୟାନ ଦେଲେ ନାହିଁ । ଗୁରୁ ଦେଇଥିବା କାଗଜ ଖଣ୍ଡି ସେ ବାହାର କଲେ । ତାକୁ ପଢିଲେ । ସେଥିରେ ଲେଖାଥିଲା ତୁମେ ତୁମ ରାଜ୍ୟ ଛାଡ଼ି ଯାଉଛ । ଯେଉଁଠି ପହଞ୍ଚିବ ତାହା ତମର ଅଜଣା ଆଉ ଅଶୁଣା । ସେଠି କୌଣସି ଜିନିଷ ବା ମଣିଷ, କାହାକୁ ବିଶ୍ୱାସ କରିବ ନାହିଁ । ମନେରଖ, ବିପଦ ଆସିଲେ, ନିଜର ଲୋକ ଦୂରେଇ ଯାଆନ୍ତି । ସେମାନଙ୍କ ଦ୍ୱାରସ୍ଥ ହେବାର ପ୍ରଶ୍ନ ଉଠୁ ନାହିଁ । ଯେ ବିପଦ ବେଳେ ଆସିବ, ତାକୁ ବିଶ୍ୱାସ କରିବ । ରାଜା ବହୁବାର ଏହାକୁ ପଢିଲେ । ବାରମ୍ବାର ମନେ ମନେ ଗୁଣି ହେଲେ । ଠିକ୍ ମନେ କରି ରଖିଲେ ।

ତାପରେ ସେ କାଗଜଟିକୁ ଯତ୍ନରେ ତାଙ୍କ ପକେଟରେ ସାଇତି ରଖିଲେ । ତାପରେ ଗୋଟିଏ ଜାଗାରେ ସେ ସ୍ଥାନ ଗ୍ରହଣ କଲେ ।

ସେ ତାଙ୍କ ଆଖିକୁ ଋଣଆଡ଼େ ବୁଲାଇ ଆଣିଲେ । କାଶ୍ମୀର ଉପତ୍ୟକା ତାଙ୍କ ସମ୍ମୁଖରେ । ସମସ୍ତ ଭୂଭାଗ ରଙ୍ଗମୟ । ଋଣ-ଆଡ଼େ ଗୋଲାପୀ ଧଳା ଆଲମଣ୍ଡ ଫୁଲର ସମାବେଶ । ତଳେ ଗାଢ଼ ସବୁଜ ରଙ୍ଗର ଘାସ । ତା ଉପରେ ପଡ଼ିଛି ଝଡ଼ା ଆଲମଣ୍ଡ ଫୁଲ ପାଖୁଡ଼ା । ଏହା ଏକ ଅନବଦ୍ୟମୟ ସୁଷମା ସୃଷ୍ଟି କରୁଥାଏ । ଟିକିଏ ଦୂରରେ ଲମ୍ବା ସୋରିଷ କିଆରୀ । ସେଥିରେ ଫୁଲ ଫୁଟିଛି । ମାଇଲ ମାଇଲ ଧରି ତାହା ସମସ୍ତ ଭୂଖଣ୍ଡକୁ ଗାଢ଼ ହଳଦୀ ରଙ୍ଗରେ ସଜେଇ ଦେଇଛି । ନାନା ରଙ୍ଗର ପକ୍ଷୀମାନଙ୍କର ଉପସ୍ଥିତି ଓ ସେମାନଙ୍କ କାକଳି—ଏକ ଅପୂର୍ବ ପରିବେଶର ସଞ୍ଚାର । ଆଜି ପର୍ଯ୍ୟନ୍ତ ତାଙ୍କ ଜୀବନ କର୍ମ ମୁଖରିତ ଥିଲା । ଏ ଦୃଶ୍ୟ ଉପଭୋଗ କରିବାକୁ ମୁହୂର୍ତ୍ତିଟିଏ ବେଳ ସେ ପାଇ ନାହାନ୍ତି । ସଂସାରରେ ଯେ ଏତେ ରୂପର ଭଣ୍ଡାର ଅଛି, ତାହା ତାଙ୍କୁ ବିସ୍ମୟ କଲା । ରାଜା ମନେ ମନେ କାଶ୍ମୀରର ପ୍ରଶଂସା କଲେ । ସେ ସନ୍ତୋଷର ଦୀର୍ଘ ନିଃଶ୍ୱାସ ପକାଇ ଗୁଣୁ ଗୁଣୁ କରି କହିଲେ—କାଶ୍ମୀରର ସମାନ କେହି ନାହିଁ । କାଶ୍ମୀର ସ୍ୱର୍ଗ ସଙ୍ଗେ ସମାନ ।

ସେ ତ କ୍ଳାନ୍ତ । ଅବସନ୍ନ । ତାଙ୍କର ବିଶ୍ରାମ ଦରକାର । ସେ ସମ୍ଭାକଉଡ଼ର ଦୋକାନରେ ବସି ପଡ଼ିଲେ । ଲୁଣି ଚା ଟିକିଏ ପିଇଲେ । ଘଣ୍ଟା ପାଏ ସେ ବୁଲିଛନ୍ତି । ଆଖିରେ ତାଙ୍କର ଥକିଏ ନିଦ । ଆଖି ଖୋଲିବା ମଧ୍ୟ ତାଙ୍କ ପକ୍ଷେ କଷ୍ଟ ହେଉଥାଏ । ସେ

ଭାବଲେ—ତାଙ୍କର କିଛି ସମୟ ବିଶ୍ରାମ ନେବା ଉଚିତ । ସେ ନିରାପଦ ସ୍ଥାନଟିଏ ବାଛି ଶୋଇଗଲେ । ଗାଢ଼ ନିଦ ତାଙ୍କୁ ହୋଇ-ଗଲା । ନିଦରୁ ଉଠିବାରୁ ତାଙ୍କୁ ଖୁବ୍ ଭଲ ଲାଗିଲା । ସେ ସତେଜ ହୋଇ ଉଠିଲେ । ପୁଣି ସେ ରାଜଧାନୀରୁ ବାହାର ଯାଇଥିବା ରାସ୍ତାଟିଏ ଧରିଲେ । ସେ ପୂରା ଦିନ ଓ ରାତି ଅଧ ପର୍ଯ୍ୟନ୍ତ ଚାଲୁଥିଲେ । ଗୋଟିଏ ପାନ୍ଥଶାଳା ଦୁଆରର ଆଲୁଅ ତାଙ୍କ ନଜରରେ ପଡ଼ିଲା । ରାଜା ଘରଟିକୁ ନିକନିଖି କରି ଦେଖିଲେ । ତାହା ଗୋଟିଏ ଦୋତଲା କୋଠାଘର । କାଶ୍ମୀରର ସାଧାରଣ ଘର ପରି ଦ୍ୱିତୀୟ ମହଲରେ ଗୋଟିଏ ଓପାରିଆ ବାରଣ୍ଡା ଅଛି । ସେଠାକୁ ଗୋଟିଏ ସିଡ଼ି ପଡ଼ିଛି । ସେଥିରେ ଆଠଟି ପାହାଚ । ତଳ ଘର ମେଣ୍ଢା ଛେଳି ଗାଈ ଗୋରୁରେ ପୂର୍ଣ୍ଣ । ସେମାନଙ୍କ ବୋବାଳିରୁ ଏହା ଜଣା ପଡ଼ୁଥାଏ ।

ଆଗକୁ ଯିବାକୁ ତାଙ୍କର ଜମା ଆଗ୍ରହ ନ ଥିଲା । ତେଣୁ ଏଇଠି ରାତିଟା କଟାଇବାକୁ ସେ ସ୍ଥିର କଲେ । ସେ ସବୁଆ ପାହାଚ ଦେଇ ଉପର ମହଲକୁ ଉଠିଲେ । କବାଟ ଖୋଲିବା ପାଇଁ କବାଟରେ ଠକ୍ ଠକ୍ ଶବ୍ଦ କଲେ । ଜଣେ ବୁଢ଼ୀ ଦୁଆର ଖୋଲି ଦେଲା । ବୁଢ଼ୀଟି ଦେଖିବାକୁ କଦାକାର । ଏପରି ଅସୁନ୍ଦର ସ୍ତ୍ରୀ ଲୋକଟିଏ କେବେହେଲେ ରାଜାଙ୍କ ନଜରକୁ ଆସି ନ ଥିଲା । ସେ ଏଥିପାଇଁ ସେଠାରେ ରହିବେ ନାହିଁ ବୋଲି ଭାବିଲେ । ଫେରିବାକୁ ସେ ଉଦ୍ୟମ କରୁଛନ୍ତି, ବୁଢ଼ୀଟି ହସି ହସି କହିଲା—"ରାତି ବେଶି ହେଲାଣି । କୁଆଡେ ଆଉ ଯିବ ? ଆଜି ରାତିଟା ଏଠି କଟାଇ ଦିଅନ୍ତୁ । କାଲି ସକାଳେ ଚାଲିଯିବ ।"

ରାଜା ବୁଢ଼ୀର କଥା ମାନିଲେ । ତା ପଛେ ପଛେ ପାନ୍ଥଶାଳାରେ ପଶିଲେ । ତାଙ୍କୁ ଗୋଟିଏ କୋଠରୀକୁ ନିଆଗଲା । ସେ ବଖରାଟି ଘର ଅନ୍ଧାରିଆ । ସେଥିରେ ବିଛଣାଟିଏ ପଡ଼ିଥାଏ । ତା' ଉପରେ ଧଳା ଚଦର ପରା ହୋଇଥାଏ । ସେ ତ ଶୋଇବାକୁ ଯାଉଥିଲେ, ହଠାତ୍ ଗୁରୁଙ୍କ କଥା ତାଙ୍କ ମନେ ପଡ଼ିଲା । ତେଣୁ ସେ ବିଛଣାରେ ଶୋଇଲେ ନାହିଁ । ନିଜ ମନକୁ ସଜାଗ କରି ନେଲେ । କିଛି ଗରମ ଖାଦ୍ୟ ଆଣିବା ପାଇଁ ବରାଦ ଦେଲେ । ବୁଢ଼ୀଟି ଚାଲିଗଲା । ସେ ଭିତରୁ ପଟ୍ ଦ୍ୱାର ଦେଇଦେଲେ । ବିଛଣା ଚଦର ଉଠାଇ ଦେଖିଲେ ଯେ ଗୋଟିଏ ନରମ ଗଦି ଖଟ ଉପରେ ପଡ଼ିଛି । ତାକୁ ସେ ଉଠାଇ ନେଲେ । ତାପରେ ଯାହା ଦେଖିଲେ ତାଙ୍କ ଆଖି ଖୋସି ହୋଇଗଲା । ସେଠି ଖଟର ପଟା ନ ଥିଲା । ଗାତଟିଏ ଥିଲା । ଯଦି ବସିଥାନ୍ତେ, ସିଧା ଗାତ ଭିତରେ ପଶି ଯାଇଥାନ୍ତେ । ସେ ପୁଣି ବିଛଣା ଯେମିତି ପଡ଼ିଥିଲା, ସେମିତି ଘୋଡ଼ାଇ ଦେଲେ । ଦ୍ୱାର ଖୋଲି ସେ ବଡ଼େ ବୁଲିଲେ । ବୁଢ଼ୀ ଖାଦ୍ୟ ନେଇ ପଡ଼ିଥିଲା । ସେ ତାକୁ ହତ୍ୟା କଲେ । ସେଇ ଗାତ ଭିତରକୁ ପକାଇ ଦେଲେ । ବିଛଣାଟି ସେମିତି ପକାଇ ଧର୍ମଶାଳାରୁ ବାହାରି ପଡ଼ିଲେ ।

ଦୁଇ ଦିନ ଓ ଦୁଇ ରାତି ସେ ଚାଲି ଚାଲି ଆସି ଗୋଟିଏ ସହରରେ ପହଞ୍ଚିଲେ । ସେଠି ତାଙ୍କର ପିଲାଦିନର ସାଙ୍ଗ ରହୁଥିଲା । ତା ପାଖକୁ ଗଲେ । ରାଜା ତ ଗୋଟେ ପର୍ଯ୍ୟଟକର ପୋଷାକ ପିନ୍ଧିଥିଲେ । ବାଟ ଚାଲି ଚାଲି ଆସିବାରେ ସେ ସବୁ ମଇଳା ହୋଇ ଯାଇଥିଲା । ସେ କ୍ଳାନ୍ତ ଓ ଅବସନ୍ନ ଦେଖା ଯାଉଥିଲେ । ବନ୍ଧୁ ଜଣକ ତାଙ୍କୁ ଚିହ୍ନି ପାରିଲା ନାହିଁ । ପରେ ଯେତେବେଳେ ଜାଣିଲା

ଯେ ରାଜା ସେ ରାଜ୍ୟ ଛାଡ଼ି ଚାଲି ଆସିଛନ୍ତି ଓ ସେ ତାଙ୍କୁ କୁଣ୍ଢେଇ ପକାଇଲା । ସେଠି ରାଜା କିଛି ଦିନ ରହିଲେ । ବନ୍ଧୁଟି ତାଙ୍କୁ ଉତ୍ତମ ବ୍ୟବହାର କରୁଥିଲା । ଯତ୍ନ ନେବାରେ ତ୍ରୁଟି କରୁନଥିଲା । ଦୁଇ ବନ୍ଧୁ ପିଲାଦିନର କଥା ମନେ ପକାଇଲେ । ଏକାଠି ଖୁସିରେ ଦୁଇ ମାସ କାଳ କଟାଇ ଦେଲେ । ତୃତୀୟ ମାସର ପ୍ରଥମ ଦିନ । ରାଜା ବନ୍ଧୁକୁ କହିଲେ—"ମୋତେ ପଡ଼ୋଶୀ ରାଜ୍ୟକୁ ଯିବାକୁ ହେବ । ତାଙ୍କ ସାହାଯ୍ୟ ନେଇ ରାଜଗାଦି ହାସଲ କରିବାକୁ ହେବ । ମୋତେ ଯିବାକୁ ଦିଅ ।" ବନ୍ଧୁଟି ତାଙ୍କୁ ବିଦାୟ ଦେଲା । ଗଲା ବେଳେ ଗୋଟିଏ ବେଗବାନ ଘୋଡ଼ା ଦେଇ କହିଲା—"ଏହାକୁ ନିଅ । ଏ ତମକୁ ତମ ଲକ୍ଷ୍ୟ ସ୍ଥଳରେ ନିରାପଦରେ ପହଞ୍ଚାଇ ଦେବ ।" ରାଜା ତା ଠାରୁ ଘୋଡ଼ା ଗ୍ରହଣ କଲେ ନାହିଁ । ସେ ଚାଲି ଚାଲି ବାହାରିଲେ ।

ସେ ଦୁଇ ଦିନ ପରେ ତାଙ୍କ ଦାଦାଙ୍କ ପାଖେ ପହଞ୍ଚିଲେ । ତାଙ୍କର ଏ ଅବସ୍ଥା ଦେଖି ଦାଦା ଆଶ୍ଚର୍ଯ୍ୟ ହୋଇଗଲେ । ତାପରେ ସେ ରାଜ୍ୟ ଛାଡ଼ି ଚାଲି ଆସିବା କଥା ଶୁଣି ଦାଦା ତାଙ୍କର ତାଙ୍କୁ ଯଥାଆଦର କଲେ ନାହିଁ । ଏହା ରାଜାଙ୍କୁ ଖୁବ୍ ବାଧିଲା । ବିପଦରେ ପଡ଼ିଲେ ବନ୍ଧୁବାନ୍ଧବ ଦୂରେଇ ଯାଆନ୍ତି, ଏହା ତାଙ୍କ ଗୁରୁଙ୍କର ଉପଦେଶ । ଏହା ଅକ୍ଷରେ ଅକ୍ଷରେ ସତ ବୋଲି ସେ ଅନୁଭବ କଲେ । ସେଠି ସେ ଆଉ ନ ରହି ପଳାଇଲେ ।

ପଡ଼ୋଶୀ ରାଜ୍ୟରେ ପହଞ୍ଚିଲେ । ନିଜର ପରିଚୟ ରାଜାଙ୍କୁ ଦେଲେ । ସେ ଦେଶର ରାଜା ତାଙ୍କୁ ଉଚିତ ସମ୍ମାନ ଦେଲେ ।

ତାଙ୍କର ତ ଅର୍ଥର ଅଭାବ ନ ଥିଲା ! ସେଠାକାର ରାଜାଙ୍କର ସାହାଯ୍ୟ ବି ମିଳିଲା । ତେଣୁ ଏକ ବିରାଟ ସୈନ୍ୟ ବାହିନୀ ସଂଗ୍ରହ

କରିବାରେ ତାଙ୍କୁ ଅସୁବିଧା କିଛି ହେଲା ନାହିଁ । ସେ କାଶ୍ମୀର ଆକ୍ରମଣ କରିବାକୁ ବାହାରି ପଡ଼ିଲେ ।

ରାଜା ପଳାଇ ଯିବା ପରେ ମନ୍ତ୍ରୀ ଓ ସେନାପତିଙ୍କ ମଧ୍ୟରେ କିଏ ବେଶି କ୍ଷମତା ହାସଲ କରିବ, ସେଥିପାଇଁ ଦ୍ୱନ୍ଦ ଆରମ୍ଭ ହୋଇ-ଗଲା । ବିଦ୍ରୋହ କରି ରାଜାଙ୍କୁ ତଡ଼ିବାରେ ଯେଉଁ ଏକ ମନ ଓ ଏକ ଧାରଣା, ସେ ସବୁ ଆଉ ନ ଥିଲା । ବରଂ ସେମାନେ ପରସ୍ପରକୁ ସହ୍ୟପାରୁ ନ ଥିଲେ । ଏହାର ପ୍ରଭାବ ସୈନ୍ୟମାନଙ୍କ ଉପରେ ପଡ଼ୁଥିଲା ।

ରାଜାଙ୍କ ଆକ୍ରମଣରେ କାଶ୍ମୀର ସୈନ୍ୟ ଏକ ପ୍ରାଣରେ ଲଢିଲେ ନାହିଁ । ଅନେକ ପ୍ରାଣ ଭୟରେ ପଳାଇଲେ । ଯେଉଁମାନେ ରହିଲେ ଯୁଦ୍ଧରେ ସେମାନେ ନିହତ ହେଲେ । ସବୁ ସେନାପତି ବି ମଲେ । ରାଜା ପୁଣି କାଶ୍ମୀର ରାଜା ସିଂହାସନ ଆରୋହଣ କଲେ । ତାଙ୍କ ଅନୁପସ୍ଥିତିରେ ତାଙ୍କ ଗୁରୁଙ୍କର କେହି ତତ୍ତ୍ୱ ନେଲେ ନାହିଁ । ସେ ସେ ଇହଲୀଳା ସାଙ୍ଗ କରି ଦେଇଥିଲେ । ଏ ଖବର ରାଜାଙ୍କୁ ଏକ ଶକ୍ତ ଧକ୍କା ଦେଲା । ସେ ଗୁରୁଙ୍କର ଏକ ସମାଧି ମଠର କରି ଦେଲେ । ବଞ୍ଚି ଥିବାଯାଏ ପ୍ରତିଦିନ ସେଠାକୁ ସେ ଯାଉଥିଲେ ।



# କାଶ୍ମୀରର ରାଜା

ବହୁଦିନ ତଳେ କାଶ୍ମୀରରେ ଜଣେ ରାଜା ଥିଲେ । ସେ ବୌଦ୍ଧ । ଧର୍ମ ପ୍ରତି ତାଙ୍କର ଅନୁରାଗ ବହୁତ । ସେଥିପାଇଁ ସେ ବହୁ ବିହାର କଲେ । ମଠର ବହୁତ ତୋଳାଇଲେ । କିନ୍ତୁ ସବୁ ଲୋକ ତ ସ୍ୱାର୍ଥ ପାଇଁ ପାଗଳ । ରାଜାଙ୍କୁ ସନ୍ତୁଷ୍ଟ କଲେ ସ୍ୱାର୍ଥ ସିଦ୍ଧ ହେବ, ଏକଥା ପ୍ରଜା ଓ ପାଖଲୋକଙ୍କ ଧାରଣା । ତେଣୁ ରାଜାଙ୍କୁ କିପରି ସନ୍ତୁଷ୍ଟ କରିବାକୁ ହେବ ସେଥିପାଇଁ ସେମାନେ ଚେଷ୍ଟା କରନ୍ତି । କାଶ୍ମୀର ଲୋକେ ଏହା ବ୍ୟତିକ୍ରମ ନ ଥିଲେ । ଅଧିକାଂଶ ଲୋକ କାଶ୍ମୀରରେ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଗଲେ ।

ସବୁ କାଳରେ ଏବଂ ସବୁ କ୍ଷେତ୍ରରେ ବ୍ୟତିକ୍ରମ ଥାଏ । ତାହାହିଁ କାଶ୍ମୀରରେ ଘଟିଥିଲା । କେତେକ ଲୋକ ବୌଦ୍ଧ ହେଲେ ନାହିଁ । ବରଂ ଯେଉଁମାନେ ବୌଦ୍ଧ ହେଲେ ନାହିଁ ସେମାନେ ଧର୍ମାନ୍ତରିତ ଲୋକଙ୍କୁ ଘୃଣା କରୁଥିଲେ । ସେମାନଙ୍କ ମଧ୍ୟରେ ମନ୍ତ୍ରୀଙ୍କ ପୁଅ ଅନ୍ୟତମ । ସେ ବାରମ୍ବାର ମନ୍ତ୍ରୀଙ୍କୁ କହେ—ଆମେ ହିନ୍ଦୁ । ଆମର ଧର୍ମ ସନାତନ । ସବୁ ଧର୍ମର ସମନ୍ୱୟ । ତୁମେ ତାକୁ ଛାଡ଼ି ବୌଦ୍ଧ ହେଲ ? ଏହା ଉଚିତ ହେଲା ନାହିଁ । ମନ୍ତ୍ରୀ ବୌଦ୍ଧ ଧର୍ମର ଉତ୍କର୍ଷତା ଉପରେ ବହୁତ କୁହନ୍ତି । କିନ୍ତୁ ଯୁକ୍ତିରେ ପାରନ୍ତି ନାହିଁ ।

ପୁଅ ପଚାରେ—"ମଣିଷ ପାଇଁ ଧର୍ମ । ଦୟା, କ୍ଷମା, ଶ୍ରଦ୍ଧା, କ୍ରୋଧଶୂନ୍ୟତା ଓ ପରୋପକାର ସବୁ ଧର୍ମର ମୂଳଭିତ୍ତି । ବୌଦ୍ଧ ଧର୍ମର ନୂଆ କଥା କ'ଣ କହିଲ ?"

ମନ୍ତ୍ରୀ ବୁଝାଇବାକୁ ଚେଷ୍ଟା କରନ୍ତି । ପାରନ୍ତି ନାହିଁ । ତାଙ୍କର ଧାରଣା —ଯେ ଅବୁଝା ହେବାକୁ ଚାହେଁ, ତାକୁ ବୁଝାଇ ହେବ ନାହିଁ । ତେଣୁ ତାତ୍ତ୍ୱିକ ଆଲୋଚନା ନିରର୍ଥକ । କିନ୍ତୁ ନିଜର ସ୍ୱାର୍ଥ ସାଧନା ହେଉଛି ମଣିଷର ସବୁଠାରୁ ବଡ଼ ଲାଳସା । ମନ୍ତ୍ରୀ ତାର ଅଧୀନ । ସେଥିପାଇଁ ପୁଅକୁ ଧର୍ମ ବଦଳାଇ ବୌଦ୍ଧ ଧର୍ମ ଗ୍ରହଣ ପାଇଁ ବାଧ କଲେ ।

ପୁଅ ଥରେ ସିଧା ସିଧା ମନ୍ତ୍ରୀଙ୍କୁ କହିଲା—"ବାପା, ମୋତେ ଧର୍ମ ବଦଳାଇବା କଥା ଆଉ କହିବ ନାହିଁ । ମୋତେ ବାଧ କଲେ ଘର ଛାଡ଼ି ଚାଲିଯିବି ।"

ମନ୍ତ୍ରୀ ଭାବିଲେ – ମୋର ଗୋଟିଏ ବୋଲି ପୁଅ । ସେ ପୁଣି ଘର ଛାଡ଼ି ଚାଲିଯିବ ? ମୋର ସଂସାର କ'ଣ ଆଉ ରହିବ ? ସେଥିପାଇଁ ସେ ପୁଅକୁ ଆଉ କିଛି କହିଲେ ନାହିଁ । କିନ୍ତୁ ପୁଅ ଯଦି ବୌଦ୍ଧ ନ ହୁଏ, ତାଙ୍କ ଅନ୍ତେ ସେ ଆଉ ମନ୍ତ୍ରୀ ହୋଇ ପାରିବ ନାହିଁ । ଏଥିରେ ମନ୍ତ୍ରୀଙ୍କର ସନ୍ଦେହ ନ ଥିଲା । ତେଣୁ ମନ୍ତ୍ରୀ ଭାବନ୍ତି—ଏ ବଂଶର ଗାରିମା ଏଇଠି ଶେଷ ହୋଇଯିବ । ବଂଶର ଲୋକେ ଛାରଖାର ହୋଇଯିବେ । ସେଥିପାଇଁ ସେ ଦୁଃଖିତ । ଏହାହିଁ ଥିଲା ତାଙ୍କର ଏକମାତ୍ର ଦୁଃଖ ।

କଥାଟା ଏପଟ ସେପଟ ହୋଇ ରାଜାଙ୍କ କାନକୁ ଗଲା । ରାଜା ଏହାର ସତ୍ୟାସତ୍ୟ ନେଇ ମନ୍ତ୍ରୀଙ୍କୁ ପଚାରିଲେ । ମନ୍ତ୍ରୀ କହିଲେ— "ମହାରାଜ, ଆପଣଙ୍କ ପାଖରେ ଯେଉଁ ଖବର ପହଞ୍ଚିଛି, ତାହା ସତ୍ୟ । କିନ୍ତୁ ଆପଣ ଏକମାତ୍ର ମୋର ସାହା ଭରସା । ପୁଅକୁ ଆଲୋକ ଦେଖାନ୍ତୁ । ସେ ମତ ପରିବର୍ତ୍ତନ କରୁ । ଏହା ମୋର ଗୁହାରି ! ନିବେଦନ । ପ୍ରାର୍ଥନା ।"

ରାଜା କିନ୍ତୁ ମତ ଦେଲେ ନାହିଁ । ଅନ୍ୟ କାମରେ ମନ ଦେଲେ । ମନ୍ତ୍ରୀ ସେଠାରେ କିଛିଏ ଅପେକ୍ଷା କଲେ । ରାଜା ଯେତେବେଳେ କଥାଟା ଆଉ ଆଗେଇ ନେବାକୁ ଚାହୁଁ ନାହାନ୍ତି, ସେ ଚୁପ୍ ହୋଇ ରହିଲେ । ସେଠାରୁ ବିଦାୟ ନେଇ ଚାଲିଗଲେ ।

ଅଳ୍ପ ଦିନ ପରେ ରାଜା ଆଦେଶ ଦେଲେ—ମନ୍ତ୍ରୀ ପୁଅକୁ ଧରିଆଣି ତାଙ୍କ ସମ୍ମୁଖରେ ହାଜର କରାଅ । ରାଜାଦେଶ । ଅବଜ୍ଞାର ପ୍ରଶ୍ନ ଉଠୁନାହିଁ । ପାଇକମାନେ ଗଲେ । ମନ୍ତ୍ରୀ ପୁଅକୁ ଧରି ଆଣିଲେ । ମନ୍ତ୍ରୀ ଓ ତାଙ୍କ ପୁଅଙ୍କ ପ୍ରତିବାଦ ନିରର୍ଥକ ହେଲା ।

ରାଜା ମନ୍ତ୍ରୀଙ୍କ ପୁଅକୁ କହିଲେ—"ମୋର ଆଦେଶ ତୁମର ଶିରଚ୍ଛେଦ ହେବ । ଆଜିଠାରୁ ଠିକ୍ ଏକ ମାସ ପରେ ।"

ମନ୍ତ୍ରୀ ପୁଅ ଉପରେ ଥରି ଉଠିଲା । ସେ ଥରି ଥରି ପଚାରିଲା— "କି ଦୋଷ ମୁଁ କଲି ଯେ ଅନୁଗ୍ରହ କରି ତୁମ୍ଭେ ମୋତେ ମୃତ୍ୟୁଦଣ୍ଡ ଆଦେଶ ଦେଲେ ? ଦୟା ହେଉ । ମୋତେ କାରଣ ଜଣାଇ ଦିଆ ହେଉ ।"

ରାଜା କହିଲେ—"ତୁମକୁ ମୁଁ କୌଣସି କାରଣ ଦର୍ଶାଇବାକୁ ବାଧ୍ୟ ନୁହେଁ । କିନ୍ତୁ ଏ ଯେଉଁ ଏକମାସ ସମୟ ଅଛି, ସେହି ସମୟ ତୁମେ ତୁମ ବାପାଙ୍କ ସହ ରହିପାର । ନିର୍ଭୟରେ ବୁଲାବୁଲି କର । ସେ ସମ୍ପର୍କରେ କିଛି କଟକଣା ନାହିଁ । ରକ୍ଷୀମାନେ ତୁମ ଦେହରକ୍ଷୀ ଭଳି କାମ କରିବେ । ମାସ ପୂରିଗଲେ, ମୋ ପାଖରେ ହାଜର କରାଇବେ ।"

ଏ ଏକ ଅଜବ ଆଦେଶ । ଯେ ଶୁଣିଲା, ସେ ହସିଲା । ମନ୍ତ୍ରୀଙ୍କର ରକ୍ତ ଶୁଖିଗଲା । ସେ ଆସି ରାଜାଙ୍କ ପାଖରେ ଆପତ୍ତି କଲେ । ଫଳ କିଛି ଫଳିଲା ନାହିଁ ।

ଯେଉଁଦିନ ମାସ ପୂରିଲା, ମନ୍ତ୍ରୀଙ୍କ ପୁଅକୁ ରାଜାଙ୍କ ପାଖରେ ହାଜର କରାଗଲା । ପୁଅ ଅତ୍ୟନ୍ତ ସୁନ୍ଦର । ସ୍ୱାସ୍ଥ୍ୟବାନ । କିନ୍ତୁ ଏଇ ମାସକ ଭିତରେ ସେ କଳାକାଠ ପଡ଼ିଗଲେଣି । ଦେହରେ ପଲେ ମାଂସ ନାହିଁ । ଖାଲି କଣ୍ଠା ଦୋହଲୁଛି । କେବଳ ପୁଅ ଯାଇ ନ ଥିଲା ମନ୍ତ୍ରୀ ବି ତା ସାଥିରେ ଥିଲେ । ତାଙ୍କର ଅବସ୍ଥା ମଧ୍ୟ ତଦ୍ରୂପ ।

ପୁଅ ସିଧା ଯାଇ ରାଜାଙ୍କ ଗୋଡ଼ ତଳେ ପଡ଼ି କହିଲା-- "ମହାରାଜ, ଆପଣଙ୍କ ଆଦେଶ ଶୁଣିଲା ଦିନୁ ମୁଁ ଭୟରେ ଥରୁଛି । ରାତିରେ ନିଦ ହେଉନାହିଁ । ପେଟକୁ ଦାନା ଯାଉନାହିଁ । କ'ଣ ମୋର ଦୋଷ ତା ବି ଜାଣି ପାରିଲି ନାହିଁ । ଦୟା କରିବା ହେଉ । କ୍ଷମା ମିଳିବା ହେଉ ।"

ରାଜା କହିଲେ- 'ମୋର ଆଦେଶରେ ଲକ୍ଷ୍ୟ ମୃତ୍ୟୁଦଣ୍ଡ ନ ଥିଲା ।'

ଏହା ଏକ ଶିକ୍ଷା ପାଇଁ କରାଯାଇଥିଲା । ମଣିଷର ମୃତ୍ୟୁକୁ ସବୁଠାରୁ ବେଶି ଡର । ଏଇ ଭୟରେ ସେ ତାର ବର୍ଗର ଶକ୍ତି ହରାଏ । କିନ୍ତୁ ବୌଦ୍ଧଧର୍ମର ଶରଣାପନ୍ନ ହେଲେ, ମୃତ୍ୟୁର ଭୟ ରହିବ ନାହିଁ । ବରଂ ମୁକ୍ତିର ବାଟ ଖୋଜିବ । ବୌଦ୍ଧଧର୍ମ ଏଇ ସମସ୍ୟାର ସମାଧାନ କରିଛି । ତୋ ବାପା ସେଥିପାଇଁ ସେଇ ଧର୍ମର ଶରଣାପନ୍ନ । ତୁ ତାର ସମାଲୋଚକ । କିନ୍ତୁ ମୃତ୍ୟୁକୁ ତୋର ଘୋର ଭୟ । ଯେଉଁ ଧର୍ମରେ ମୃତ୍ୟୁକୁ ଭୟ ନାହିଁ, ତା ଉତ୍କୃଷ୍ଟ । ତେଣୁ ବୌଦ୍ଧଧର୍ମକୁ ତୁ ମାନିନେବା ଉଚିତ ।"

ଯୁବକଟି କହିଲା—"ମହାରାଜ ! ଆଜି ଯେଉଁ ଶିକ୍ଷା ମୁଁ ଆପଣଙ୍କଠାରୁ ପାଇଲି, ସେଥିପାଇଁ ମୁଁ ଧନ୍ୟ । ବୌଦ୍ଧଧର୍ମ ବିଷୟରେ ମୁଁ ଅଧିକ କିଛି ଜାଣିବାକୁ ଚାହେଁ ।"

ରାଜା କହିଲେ—"ତୁ ଆଜିଠାରୁ ଅତିଥି ଭବନରେ ରହ । ବୌଦ୍ଧଧର୍ମରେ ଥିବା ସମସ୍ତ ପୁସ୍ତକ ପଢ଼ । ଯଦି ସମ୍ୟକ ଜ୍ଞାନ ନ ମିଳେ, ମୋତେ କହିବୁ ।"

କିଛି ଦିନ ଏହା ଭିତରେ ବିତିଗଲା । ହଠାତ୍ ଦିନେ ସନ୍ଧ୍ୟା ବେଳେ ରାଜାଙ୍କର ଆଦେଶରେ ଯୁବକଟି ତାଙ୍କ ପାଖରେ ପହଞ୍ଚିଲା । ତାଙ୍କୁ ଦେଖି ରାଜା କହିଲେ—"ଏଇ ଜଳନ୍ତା ଲ୍ୟାମ୍ପଟି ନେ । ତୋ ବାପାଙ୍କ ପାଖକୁ ଯା । ତାପରେ ଏହାକୁ ଧରି ଫେରି ଆସିବୁ । କିନ୍ତୁ ଫେରିବାବେଳେ କି ଆସିଲା ବେଳେ ଲ୍ୟାମ୍ପ ଯଦି ଲିଭେ, ତୋର ମୃତ୍ୟୁ ଅନିବାର୍ଯ୍ୟ ।"

ଭୟଭୀତ ଯୁବକଟି ହାତରେ ଲ୍ୟାମ୍ପ ଧରି ଚାଲିଥାଏ । ପବନରୁ ଲ୍ୟାମ୍ପ ଆଲୁଅକୁ ରକ୍ଷା କରିବା ପାଇଁ ସେ ଯତ୍ନବାନ ।

ସେ ଗୋଟିଏ ହାତରେ ଲ୍ୟାମ୍ପ ଧରିଥିଲା । ଆର ହାତରେ ତାକୁ ଘୋଡ଼ାଇଥିଲା । ସେ ଧୀରେ ଧୀରେ ଯାଉଥିଲା । ତାର ଆଖି ସବୁବେଳେ ଲ୍ୟାମ୍ପର ଜଳୁଥିବା ଆଲୁଅ ଉପରେ । ପଛରେ ତାର ଖଣ୍ଡାଧରି ରକ୍ଷୀମାନେ ଚାଲୁଥାନ୍ତି । ସେମାନେ ମନ୍ତ୍ରୀଙ୍କ ଘରକୁ ସହରର ଅଳିଗଳି କନ୍ଦି ଭିତର ଦେଇ ଗଲେ । ପବନ ଦହଲକାଏ ଆସିଲେ, ଯୁବକର ରକ୍ତ ଶୁଖିଯାଏ । ସେ ଶେଷକୁ ଯାଇ ଘରେ ପହଞ୍ଚିଲା । ତାକୁ ଦେଖି ତାର ବାପା ଧାଇଁ ଆସିଲେ । ତାଙ୍କୁ ଦେଖି ମନ୍ତ୍ରୀ ପୁଅ କହିଲା—"ବାପା, ମୋତେ ଛୁଅଁ ନାହିଁ । ରାଜାଙ୍କର ଆଦେଶ । ତାଙ୍କୁ ମୋତେ ପାଳିବାକୁ ହେବ । ମୁଁ ଉଆସକୁ ଏଇନେ ଫେରିଯିବି । ବାଟରେ ହେଉ କି ଏଠି ହେଉ ଯଦି ଆଲୁଅ ଲିଭେ, ମୋତେ ଫାଶୀ ମିଳିବ । ଏହା ନ ଲିଭିବା ମୋ ହାତରେ । ତେଣୁ ମୋତେ ଅନ୍ୟମନସ୍କ କରିବାକୁ ଦିଅ ନାହିଁ । ବିଦାୟ ଦିଅ ।"

ମନ୍ତ୍ରୀଙ୍କର ପୁଅକୁ ଅଟକାଇବାର ପ୍ରଶ୍ନ ଆଉ ଉଠିଲା ନାହିଁ । ଏ ଯେ ଗୁରୁତର ପରୀକ୍ଷା । ମନ୍ତ୍ରୀ ଏହା ଅନ୍ତରେ ଅନ୍ତରେ ଅନୁଭବ କଲେ । ସେ ଯେ ରାଜାଦେଶ ପାଳିବାକୁ ବାଧ୍ୟ । ପରିବର୍ତ୍ତନ ତାଙ୍କ ପକ୍ଷେ ଅସମ୍ଭବ । ଏହା ତାଙ୍କୁ ଭଲ ଭାବରେ ଜଣା । ସେ ପୁଅର ପଛେ ପଛେ ଚାଲିଲେ । ରାଜଦ୍ୱାରରେ ସେ ପହଞ୍ଚି ଦେଖିଲେ—ସ୍ୱୟଂ ରାଜା ପୁଅକୁ ତାଙ୍କର ସାଙ୍ଗେଟି ନେବାକୁ ବିଜେ କରିଛନ୍ତି । ତାଙ୍କ ପୁଅକୁ ଦେଖି ରାଜା ଖୁବ୍ ଖୁସି ।

ରାଜା ମନ୍ତ୍ରୀଙ୍କ ପୁଅଠାରୁ ଲ୍ୟାମ୍ପ ନେଇଗଲେ । ତାକୁ ପଚାରିଲେ—"ପୁଅ, ବାଟରେ ତୁମେ କାହାକୁ ସବୁ ଭେଟିଲ, ମୋତେ କୁହ ।"

ଯୁବକଟି ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲା -"ମହାରାଜ ! ଆପଣଙ୍କ ଆଦେଶ ଅତ୍ୟନ୍ତ ଭୟଙ୍କର । ତାହାକୁ ପାଳିବା ମୋର ଏକମାତ୍ର ଲକ୍ଷ୍ୟ ଥିଲା । ତେଣୁ ସବୁ ସମୟରେ ମୋର ଆଖି ଦୁଇଟି ଲ୍ୟାମ୍ପ ଦେହରେ ଲାଗି ରହିଥିଲା । ତେଣୁ ମୁଁ କାହାକୁ ବାଟରେ ଦେଖିପାରି ନାହିଁ ।"

ରାଜାଙ୍କ ଓଠରେ ସାମାନ୍ୟ ହସ । ସେ କହିଲେ—"ଏକାଗ୍ରତା ରହିଲେ, ମଣିଷ ମନ ଚହଲେ ନାହିଁ । ଏହାହିଁ ପରୀକ୍ଷାରେ ତୁମେ ହାସଲ କଲ । ଯଦି ମଣିଷ ଗୋଟିଏ ବିଷୟରେ ମନ ଧ୍ୟାନ ଦିଏ, ସେ ଆଉ କୌଣସି କଥା ଜାଣି ପାରିବ ନାହିଁ । ସେଥିପାଇଁ ବୌଦ୍ଧ-ଧର୍ମ କହେ—ତୁମେ ଯଦି ସବୁବେଳେ ପ୍ରାଣୀମାନଙ୍କ ମଙ୍ଗଳ ଉପରେ ଗଭୀର ଭାବରେ ଧ୍ୟାନ ଦେବ, ତୁମେ ପୃଥିବୀର ଅନ୍ୟ କୌଣସି କଥା ଜାଣି ପାରିବ ନାହିଁ । ଦୁଃଖ ଆପେ ଆପେ ଆସି ଚାଲିଯିବ । ତୁମେ ଜାଣି ପାରିବ ନାହିଁ । ତୁମେ ସତ୍ୟର ସନ୍ଧାନ ପାଇବ । ଜନ୍ମ, ଜରା, ମୃତ୍ୟୁ ଚକ୍ରରୁ ଅବ୍ୟାହତି ନେବ । ଏହା କିଛି ମାମୁଲି କଥା । ତୁମେ ପରୀକ୍ଷା କରି ଦେଖିଲ ।"

ରାଜା ଯେପରି ଭାବରେ ଶିକ୍ଷା ଦେଲେ, ତାହା ମନ୍ତ୍ରୀଙ୍କ ପୁଅକୁ ଚକିତ କରିଦେଲା । ରାଜାଙ୍କର ଏ ଯେ ଏକ ଫଳପ୍ରଦ ଶିକ୍ଷାର ବ୍ୟବସ୍ଥା, ତାହାହିଁ ତାର ହୃଦବୋଧ ହେଲା । ରାଜାଙ୍କର ଉପସ୍ଥିତ ବୁଦ୍ଧି ଦେଖି ସେ ଆଶ୍ଚର୍ଯ୍ୟ । ରାଜାଙ୍କୁ ସେ ଅଶେଷ ଧନ୍ୟବାଦ ଦେଲା ।

ତାର ଏକ ବିରାଟ ପରିବର୍ତ୍ତନ ହେଲା । ସେ ବାପାଙ୍କୁ ଆଉ ସମାଲୋଚନା କଲା ନାହିଁ । କିଛି ଦିନ ପରେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଗଲା ।



# ପ୍ରତିଶୋଧ

ପ୍ରାଚୀନ କାଶ୍ମୀରରେ ପୀର ପଞ୍ଜାଲ ରାସ୍ତା ବେଶ୍ ଜଣାଶୁଣା ଥିଲା । ଏହାକୁ ଲୁଣ ରାସ୍ତା ବୋଲି ଲୋକେ କହୁଥିଲେ । କାରଣ ଏହିବାଟେ କାଶ୍ମୀରକୁ ପଞ୍ଜାବରୁ ଲୁଣ ଆସେ । ଏ ରାସ୍ତାର ଦୁଇ କଡ଼ରେ ଘଞ୍ଚ ଜଙ୍ଗଲ ଲମ୍ବି ଯାଇଛି, ତଥାପି ତାହା ଭିତରେ କାହିଁ କେତୋଟି ଗାଁ ଗଢି ଉଠିଛି । ସେଇ ଗାଁ ଭିତରୁ ରାଜପୁରି ଅନ୍ୟତମ । ଏବେ ସେ ଗାଁ ରାଜଓ୍ୱାର ନାମରେ ପରିଚିତ । ସେଇ ଗାଁରେ ସାତୋଟି ଭାଇ ଗୋଟିଏ ଭଉଣୀ ସହ ରହୁଥିଲେ । ଭାଇମାନେ ପରସ୍ପରକୁ ଭଲ ପାଆନ୍ତି । ଶ୍ରଦ୍ଧା ବି କରନ୍ତି । ଭଉଣୀ ତାଙ୍କର ଦେଖିବାକୁ ଖୁବ୍ ସୁନ୍ଦର । କଣ୍ଢେଇଟିଏ ପରି । ଭାଇମାନଙ୍କୁ ପ୍ରାଣଠାରୁ ସେ ଅଧିକ ଭଲପାଏ । ଭାଇମାନେ ବି ତାକୁ ଖୁବ୍ ଭଲ ପାଆନ୍ତି । ଭାଇମାନଙ୍କ ମଧ୍ୟରେ ଝଗଡ଼ା ହୁଏ । ବେଳେ ବେଳେ ମାଡ଼ଗୋଳ ପର୍ଯ୍ୟନ୍ତ ଯାଏ । କିନ୍ତୁ ଭଉଣୀକୁ ସେମାନେ କଡ଼ା କଥା ପଦେବି କହନ୍ତି ନାହିଁ । ସେ ଯାହା ପାଇଁ ଯାହା କରେ, ସେଥିରେ ସେମାନେ ଖୁବ୍ ସନ୍ତୁଷ୍ଟ ହୁଅନ୍ତି ।

ସମୟ ଗଡ଼ି ଚାଲେ, ଅତି ଦ୍ରୁତ ଗତିରେ । ଭାଇମାନେ ବାହା ହେଲେ । ଘରକୁ ସାତୋଟି ବୋହୂ ଆସିଲେ । ସମସ୍ତେ ସୁନ୍ଦରୀ, ଚଞ୍ଚଳ ଓ ଚତୁରୀ । ଘର ଚଳ ଚଞ୍ଚଳ ହୋଇ ଉଠିଲା । ପାଟି ତୁଣ୍ଡରେ ଘର ପୂରି ରହିଲା । କିଛି ଦିନ ପର୍ଯ୍ୟନ୍ତ ଘର ଆନନ୍ଦରେ ହସିଲା । କିନ୍ତୁ ବୋହୂମାନେ ଗୋଟିଏ କଥା ଲକ୍ଷ୍ୟ

କଲେ—ତାଙ୍କ ସ୍ୱାମୀମାନେ ସେମାନଙ୍କୁ ଭଲପାଆନ୍ତି ସତ, କିନ୍ତୁ ଭଉଣୀ ପରି ନୁହେଁ । ତା'ଛଡ଼ା ଭଉଣୀର ସବୁକଥା ସେମାନେ ସମସ୍ତେ ମାନନ୍ତି । ସେମାନଙ୍କ ସ୍ତ୍ରୀମାନେ ବି ତା'ର କଥା ମାନନ୍ତି, ତାହାହିଁ ସେମାନଙ୍କର ଇଚ୍ଛା । ସେଥିପାଇଁ ସେମାନଙ୍କର ଘର ନର୍କ । ତା'ର ଶ୍ରେଷ୍ଠ କଥା କେହି କେବେ ନ ମାନିଲେ, ତାଙ୍କ ସ୍ୱାମୀମାନେ ରାଗରେ ନିଆଁ ହୋଇ ଯାଉଥିଲେ । ସ୍ତ୍ରୀକୁ ତାଙ୍କର ବାଭଣ ଘରରେ ଗାଳି ଦେବାକୁ ଭୁଲୁ ନ ଥିଲେ । ଫଳରେ ବୋହୂମାନେ ଭଉଣୀଟି ଉପରେ ଅସନ୍ତୁଷ୍ଟ । ନିଆଁଟି ଯେପରି କୁହୁଳି କୁହୁଳି ଜଳେ, ସେମିତି ସେମାନଙ୍କର ଅସନ୍ତୋଷ ବଢ଼ି ବଢ଼ି ତା' ପ୍ରତି ବିଦ୍ୱେଷ ଆଣିଲା । ସେମାନେ ସମସ୍ତେ ତାକୁ ଘୃଣା କଲେ ।

ସ୍ୱାମୀମାନେ ଗଲା ପରେ ସ୍ତ୍ରୀମାନେ ଭଉଣୀକୁ ପ୍ରଥମେ ପ୍ରଥମେ ଶ୍ରେଷ୍ଠ ଶ୍ରେଷ୍ଠ କାମ ଦେଉଥିଲେ । ସେ ତାକୁ ଅଗ୍ରହ ସହ କରିଗଲା । ପ୍ରତିବାଦ କଲା ନାହିଁ । କେବଳ ସେତିକି ନୁହେଁ, ସେ କଥା ସେ କେବେହେଲେ କାହାକୁ ବି କହିଲା ନାହିଁ । ଫଳରେ ବୋହୂମାନଙ୍କର ସାହସ ବଢ଼ିଗଲା । ସେମାନେ ତାକୁ ବେଶି ବେଶି କାମ ଦେଲେ । ଏବେ ଯଦି ପ୍ରଥମ ଜଣକ ତାକୁ କହେ—"ଘର ଓଳା" । ଦ୍ୱିତୀୟ କହେ—"ବାସନ ମାଜ ।" ତୃତୀୟ କର୍କଶ ସ୍ୱରରେ କହେ—"ତୁ କେତେ ଅଳସେଇ ଝିଅ, କହିଲୁ ? ଏ ପର୍ଯ୍ୟନ୍ତ ମଇଳା ଲୁଗା ପଡ଼ିଛି । କଷ୍ଟ ହୋଇନ । ଶୀଘ୍ର କାଚ । ମଇଳା ଯେମିତି ଟିକିଏ ନ ରହିବ, ସେମିତି ସଫା କରିବୁ ।" ଶେଷରେ ସାନ ବୋହୂ କହେ—"ରନ୍ଧା ବଢ଼ା ଶୀଘ୍ର କର । ଭାଇମାନେ ଆସିଲେ, ଖାଇବେ ।"

ବଗୁଣ୍ଡ ହିଁ ଅଛି ଏଣେତେଣେ ଦୌଡ଼େ । କାମ କରେ । ସମସ୍ତଙ୍କୁ ସନ୍ତୁଷ୍ଟ ରଖିବାକୁ ଚେଷ୍ଟା କରେ । ସବୁ ବୃଥା । କାମ ତା'ର ବଢ଼ିଯାଏ । ନିଃଶ୍ୱାସ ନେବାକୁ ବେଳ ହୁଏ ନାହିଁ । ପଦ ପଦକେ ତା' ଉପରେ ଗାଳି ଅଜାଡ଼ ହୋଇପଡ଼େ । ଏମିତିକି ସେ ଟିକିଏ ଜୋଉବାକୁ ବେଳ ପାଏ ନାହିଁ । ଆଗେ ଆଗେ ସେ ଆଗ୍ରହରେ କାମ କରୁଥିଲା । ଏବେ କୌଣସି କାମରେ ତା'ର ଅଗ୍ରହ ଆଉ ନାହିଁ । ଗାଳି ଭୟରେ ଯନ୍ତ୍ରଚାଳିତ ଭଳି ସେ କାମ କରେ । ଜୀବନ ତା'ର ଦୁଃଖମୟ ହୋଇଯାଏ । ଯେତେବେଳେ ଭାଇମାନେ ଘରକୁ ଆସନ୍ତି, ତାକୁ ଫୁରୁସତ ମିଳେ ।

ଭାଇମାନେ ଆସିବାର ଘଣ୍ଟାକ ପୂର୍ବରୁ ସେ ଗାଧୁଆ ଘରକୁ ଯାଏ । ସଫା ସୁତୁରା ହୋଇ ଗାଧୋଇ ପଡ଼େ । ଭଲ ଲୁଗା ପିନ୍ଧି ଭାଇମାନଙ୍କ ଆସିବା ବାଟକୁ ଚାହିଁରହେ । ସେଥିପାଇଁ କେଉଁ ବୋହୂ କିଛି କହନ୍ତି ନାହିଁ । ବରଂ ଏଥିପାଇଁ ତାକୁ ଉତ୍ସାହିତ କରନ୍ତି । ସେ କାମରେ ବ୍ୟସ୍ତ ଥିଲେ, ବୋହୂମାନେ କହନ୍ତି— "ଆଲୋ, କାମ କରୁଛୁ କ'ଣ ? ଯା, ସଫା ସୁତୁରା ହୋଇ ଆ । ଭାଇମାନଙ୍କ ଆସିବା ବେଳ ହୋଇଗଲାଣି । ଡେରି କରନା ।"

କଷ୍ଟ ସବୁ ସହି ସହି ଜୀବନ ତା'ର ଦୁର୍ବିସହ ହୋଇଗଲା । ତଥାପି ସେ ଥରେ ତା'ର ଦୁଃଖ କଥା ଭାଇମାନଙ୍କ ଆଗରେ କହିଲା ନାହିଁ । ଭାଉଜମାନେ ତା'ର ଏ ଗୁଣ ପାଇଁ ମନେ ମନେ ତାକୁ ଖୁବ୍ ପ୍ରଶଂସା କରନ୍ତି । ସେ ଭାଇମାନଙ୍କ ପାଖରେ ମିଶିଲା ବେଳେ ଜଣାଯାଏ—ଯେପରିକି ତା'ର ଜୀବନ ସୁଖମୟ । ହସି ଖେଳି ସେ ସମୟ କଟାଇ ଦେଉଛି । ଭଉଣୀ ତାଙ୍କର ଆନନ୍ଦରେ ଅଛି, ଏହା

ଭାବି ଭାଇମାନେ ବି ଖୁସି । ତା'ର ଯୋଗୁ କେବଳ ଘରେ ଶାନ୍ତି ଶ୍ରଦ୍ଧା ବସା ବାନ୍ଧି ରହିଥିଲା । ଏଇଟା ତା'ର ଭାଇମାନଙ୍କର ବିଶ୍ୱାସ ।

ଥରେ ଗୋଟିଏ କାମ ପଡ଼ିଲା । ଭାଇମାନେ ଦୂର ଜାଗାକୁ ଗଲେ । ସେମାନେ କିଛିଦିନ ଅନୁପସ୍ଥିତ ରହିବେ, ଏ କଥା ସେମାନଙ୍କର ସ୍ତ୍ରୀମାନେ ଜାଣିଲେ । ସେମାନଙ୍କୁ ଅବାଧ ସ୍ୱାଧୀନତା ମିଳିଗଲା । ସେମାନେ ଭାବିଲେ ଏଇ ମଉକାରେ ଭଉଣୀକୁ ଶେଷ କରିଦେବେ । ଫଳରେ ସେମାନଙ୍କର କଣ୍ଟା ଯିବ । ଭାଇମାନେ ଯିବାର ପରଦିନ ବଡ଼ବୋହୂ କହିଲା—"ଅଲୋ, ଅନେଇଛୁ କ'ଣ ? ତୋ' ଭାଇଙ୍କର ମୁଦି ଏଇ ନଡ଼ା ଗଦାରେ କେଉଁଠି ହଜିଗଲା । ଖୋଜ ବାହାର କର । ନଇଲେ ଦେଖିବୁ ।" ଏତିକି କହି ସେ ଚାଲିଗଲା । ଝିଅଟି ନଡ଼ା ଗଦାକୁ ଲକ୍ଷ୍ୟ କଲା । ସେ ଦେଖିଲା—ନଡ଼ା ଗଦାଟି ବେଶ୍ ବଡ଼ । ସେଥିରୁ କିପରି ମୁଦି ଖୋଜିବ, ସେ ଜାଣିପାରିଲା ନାହିଁ । ସେଇ ନଡ଼ା ଗଦା ମୂଳେ ବସି କାନ୍ଦିଲା । ସେ ତ କାନ୍ଦିବାକୁ ସମସ୍ତ ପାଉ ନ ଥିଲା, ସମୟ ମିଳିବାରୁ ସେ ବେଶ୍ କାନ୍ଦିଲା । ଆଖିରୁ ତା'ର ଲୁହ ଧାର ଧାର ହୋଇ ବୋହି ଯାଉଥାଏ । କହିଁ କହିଁ ହୋଇ ସେ କାନ୍ଦୁଥାଏ । ତା'ର ବିକଳ କାନ୍ଦଣା ଦେଖି ମୂଷାଟିର ଦୟା ହେଲା । ସେ ପାଖକୁ ଆସି ତା' ଗୋଡ଼ ପାଖରେ ଚିଁ ଚିଁ ଶବ୍ଦ କଲା । ଗୋଡ଼ ପାଖକୁ ଅନାଇ ଝିଅଟି ଦେଖିଲା—ବଡ଼ଟ ମୂଷାଟିଏ ତା' ଗୋଡ଼ ପାଖରେ ବସିଛି । ତାକୁ ସେ ଶ୍ରଦ୍ଧାରେ ଅଉଁସି ପକାଇଲା । କହିଲା— "ମୋର ଦୁଃଖ ତୁ କାହୁଁ ଜାଣିବୁ ? ଏତେ ବଡ଼ ନଡ଼ା ଗଦାରେ ମୋ' ଭାଇ କେଉଁଠି ମୁଦିଟା ହଜାଇ ଦେଇଛି । ମୋ' ବଡ଼

ସଉଜ କହୁଛନ୍ତି, ସେ ମୁଦିକୁ ମୋତେ ବାହାର କରିବାକୁ । ନଇଲେ ସେ ମୋତେ ଦେଖିନେବ ।” ମୂଷାଟି ଡେଇଁ ଡେଇଁ ସେଠୁ ଖସି-ଯାଇ ସେ ଗଦାଟିରେ ପଶିଲା । ଝିଅଟି ସେଇଠି ବସି ରହିଲା । ଉପର ବେଳା ମୂଷାଟି ଧୀରେ ଧୀରେ ଗଦା ଭିତରୁ ବାହାରି ଆସିଲା । ମୁଦିଟା ସେ କାମୁଡ଼ି ଧରିଥାଏ । ସେଇଟି ତା’ ପାଦ ପାଖରେ ରଖିଦେଇ ତା’ ଗାତରେ ପଶିଗଲା । ଏକ ଦୀର୍ଘ ନିଃଶ୍ୱାସ ଛାଡ଼ି ଝିଅଟି ଆଶ୍ୱସ୍ତି ମାରିଲା । ମୁଦିଟିକୁ ନେଇ ବଡ଼ ସଉଜକୁ ଦେଇ ଦେଲା ।

ପରଦିନ ସବୁ ଯା’ସାକ ଏକାଠି ହୋଇ ଗୋଟାଏ ମସୁଧା କଲେ । ଗହମ ତାଙ୍କ ଘରେ ଜମା ହୋଇଥିଲା । ତାକୁ ଦେଖାଇ ସେମାନେ କହିଲେ—“ଏଥିରୁ ଭଲତକ ବାଛି କାଠ କୋଠିରେ ରଖିଦେବୁ । ଖରାପତକ ବାହାରେ ଜମା କରିଦେବୁ । ନଇଲେ, ଦେଖିବୁ ।”

ଝିଅଟି ଦେଖିଲା—ଆଖି ଆଗରେ ତା’ର ପାହାଡ଼ ଭଳି ଗହମ ଗଦା । ସେଥିରୁ ଭଲମନ୍ଦ ବାଛିବା ସମ୍ପୂର୍ଣ୍ଣ ଭାବରେ ଅସମ୍ଭବ । ସେ ପୁଣି ବିପଦରେ ପଡ଼ିଲା । ହେଥିପାଇଁ ତାକୁ କାନ୍ଦ ମାଡ଼ିଲା । ସେ ଖୁବ୍ କାନ୍ଦିଲା । ଏତିକିବେଳେ କେଉଁଠି ଥିଲେ କେଜାଣି ଦୁଇଟି ଘରଚଟିଆ ଉଡ଼ି ଆସିଲେ । ସେଠି ଆସି ବସିଲେ । ଥଣ୍ଟରେ ତାଙ୍କର ଭଲ ଗହମକୁ ଅଲଗା କରି ରଖିଲେ । ପ୍ରଥମେ ତାକୁ ଡର ମାଡ଼ିଲା । ଭାବିଲା—ସେମାନେ ଗହମ ଖାଇ ଯାଉଛନ୍ତି । କିନ୍ତୁ ନିରୀକ୍ଷଣ କରି ଦେଖିଲା ଯେ ସେମାନେ ଗୋଟିଏ ହେଲେ ଗହମ ଖାଉ ନାହାନ୍ତି । ଭଲ ଗହମ ଖରାପ ଗହମ ଅଲଗା ଅଲଗା

କରି ରଖୁଛନ୍ତି । କାମ ସରିଯିବାରୁ ସେମାନେ ଉଠିଗଲେ । ଝିଅଟି ଭଲ ଗହମ ନେଇ କୋଠିରେ ରଖିଦେଲା । ଭାଉଜମାନେ ତା'ର କିଛି ତ୍ରୁଟି ଦେଖିଲେ ନାହିଁ । ସେମାନେ ସନ୍ତୁଷ୍ଟ ହେଲେ ନାହିଁ ସିନା, କିନ୍ତୁ ତାଙ୍କର ତ କିଛି କହିବାର ନ ଥିଲା । ତେଣୁ ସେମାନେ ରାଗରେ ଗରଗର ହେଲେ ।

ତୃତୀୟ ଦିନ । ସେମାନେ କ'ଣ କାମ ଦେଇ ଝିଅଟିକୁ ହଇରାଣ କରିବେ, ସେ କଥା ସ୍ଥିର କରିପାରିଲେ ନାହିଁ । ଯାହା-ହେଉ ଝିଅଟି ଆନନ୍ଦରେ ସେ ଦିନଟି କଟାଇଦେଲା । କିନ୍ତୁ ଚତୁର୍ଥ ଦିନ ତାକୁ ଗୋଟିଏ କପ୍ ଦିଆଗଲା । ତାକୁ କହିଲେ--"ପୂର୍ବ ଦିଗରେ ଜଙ୍ଗଲରେ ଜଣେ ଋଷି ଅଛନ୍ତି । ସେ ସମସ୍ତଙ୍କୁ ଚେରମୂଳ ଓ ଔଷଧ ଗଛର ରସ ଦେଉଛନ୍ତି । ଯା, ତାଙ୍କୁ ସେଥିରୁ କିଛି ମାଗିବୁ । ସେ ଦେଲେ ଆମ ପାଇଁ ନେଇ ଆସିବୁ । ଖବରଦାର, ସଂଧ୍ୟା ପୂର୍ବରୁ ତୁ ଯେପରି ଏଠି ପହଞ୍ଚି ଯାଇଥିବୁ ।"

ତାକୁ କାହିଁକି ସଂଧ୍ୟା ପୂର୍ବରୁ ଆସିବାକୁ କୁହାଗଲା, ତା'ର କାରଣ ସେ ଜାଣେ । ସେଦିନ ତା'ର ଭାଇମାନେ ଆସିବାର କଥା, ସଂଧ୍ୟା ବେଳକୁ ହୁଏତ ଆସିଯିବେ । ସେଥିପାଇଁ ତାକୁ ଏପରି କଡ଼ା ଆଦେଶ ଦିଆଯାଇଛି ।

ବହୁ କଷ୍ଟ, ତାଡ଼ନା ଓ ନିର୍ଯ୍ୟାତନା ସହି ସହି ଝିଅଟି ଅତିଷ୍ଠ ହେଲାଣି । ଏ ଆଦେଶ ଶୁଣି ଦେହ ତା'ର ଜଳିଗଲା । ସେ ମନେ ମନେ ଭାବିଲା—ଏ ଅବସ୍ଥା କେଉଁ ଦିନ ଗ୍ଲୁଲିଲେ ସେ ମରିଯିବ । ଏଥିରୁ ରକ୍ଷା ପାଇବା ପାଇଁ ସେ କିଛି ବ୍ୟବସ୍ଥା କରିବ । ସେଥିପାଇଁ ସେ କିଛି କହିଲା ନାହିଁ । କପ୍‌ଟି ହାତରେ

ଧରି ଜଙ୍ଗଲକୁ ଗଲା । କନ୍ତୁ ଋଷିଙ୍କ ଆଶ୍ରମକୁ ସେ ଗଲା ନାହିଁ । ସେ ଜଙ୍ଗଲରେ ଗୋଟିଏ ଗଛ ଥିଲା । ତା'ର ଚେରଗୁଡ଼ିକ ଖୁବ୍ ଲାଲ । ସେଥିରୁ ସେ ରସ ବାହାର କଲା । ସେଇ ରସରେ କପ୍‌ଟି ପୂର୍ଣ୍ଣ କଲା । ତା'ପରେ ଜଙ୍ଗଲ ଛାଡ଼ି ଘରକୁ ମୁହାଁଇଲା । ବାଟରେ ତା'ର ଭାଇମାନଙ୍କ ସାଥିରେ ଦେଖାହେଲା । ସେ ସେମାନଙ୍କୁ ଦେଖି ହସିକରି ଅଭିନନ୍ଦନ ଜଣାଇଲା । ଏଇଟା ଅଟେ ଜାଗାଟି ବିପଦପୂର୍ଣ୍ଣ ଓ ନିର୍ଜନ । ଏଠାକୁ ସାଧାରଣ ସୁନ୍ଦର ଲୋକ ଆସିବା ବି କଷ୍ଟକର । ଏଠି ତାଙ୍କ ଭଉଣୀକୁ ଦେଖି ସେମାନେ ଆଶ୍ଚର୍ଯ୍ୟ ହେଲେ । ସେମାନେ ସମସ୍ତେ ଏକାବେଳକେ ପଚାରିଲେ— "ତୁ ଏଠାକୁ କାହିଁକି ଆସିଛୁ ?"

ହସ ହସ ବଦନରେ ଭଉଣୀଟି ମଧୁର ସ୍ୱରରେ କହିଲା— "ଭାଇ, ତମ ସ୍ତ୍ରୀମାନଙ୍କର ଆଖିରେ ଯନ୍ତ୍ରଣା ହେଉଛି । ସେମାନଙ୍କର ଔଷଧ ଦରକାର ପଡ଼ିଲା । ସେଥିପାଇଁ ମୋତେ ପଠାଇଲେ । ମୁଁ ମଧ ଆସି ରହିପାରିଲି ନାହିଁ । ଔଷଧ ନେଇ ଯାଉଛି ।"

ଭାଇ ଭଉଣୀ ସାଥି ହୋଇ ଘରକୁ ଫେରିଲେ । ସ୍ତ୍ରୀମାନେ ଭାଇ ସହିତ ଭଉଣୀକୁ ଦେଖି ଭୟରେ ଛାନିଆ । ସେମାନେ ଥରିବାକୁ ଲାଗିଲେ । ଯଦି ଝିଅଟି ସେମାନଙ୍କର ବ୍ୟବହାର କଥା କହି ଦେଇଥିବ, ସେମାନଙ୍କର ଅବସ୍ଥା ଶୋଚନୀୟ ହେବ । ଏଥିରେ ସେମାନଙ୍କର ସନ୍ଦେହ ନ ଥିଲା । କିନ୍ତୁ ସେମାନେ ଦେଖିଲେ— ଭାଇମାନେ ବଡ଼ ଶାନ୍ତ ଓ ମଧୁର ଭାବରେ ତାଙ୍କ ସହିତ କଥାବାର୍ତ୍ତା କଲେ । ବରଂ ସେମାନେ କହିଲେ—ତମମାନଙ୍କର ଆଖିରେ କଷ୍ଟ ହେଉଛି । ଏ କଥା ଅମେ ଆମ ଭଉଣୀଠାରୁ ଶୁଣିଲୁ । କେମିତି ସବୁ ଅଛ ? ଦେଖ, ତମମାନଙ୍କ ପାଇଁ କଷ୍ଟକରି ସେ ରସ ଆଣିଛି ।

ତୁମେ ଶୁଅ, ତମ ଆଖିରେ ସେ ଟିକଏ ଟିକଏ ରସ ପକାଇ ଦେଉ ।

ସ୍ତ୍ରୀମାନଙ୍କର ମନା କରିବାର ବାଟ ନ ଥିଲା । ସେମାନେ ଆଖିରେ ଖୁବ ଭୀଷଣ କଷ୍ଟ ହେଉଥିବାର ଛଳନା କଲେ । ରସ ଟିକଏ ଟିକଏ ପକାଇବାକୁ ଭଉଣୀକୁ ସେମାନେ କହିଲେ । ଝିଅଟି ଆଣିଥିବା ରସ ସେମାନଙ୍କ ଆଖିରେ ପକାଇଲା । ପ୍ରକୃତରେ ସେମାନଙ୍କର ଯନ୍ତ୍ରଣା ନ ଥିଲା । ରସ ପଡ଼ିବାରୁ ଯନ୍ତ୍ରଣା ଆରମ୍ଭ ହେଲା । ଦିନକୁ ଦିନ ଯନ୍ତ୍ରଣା ବଢ଼ିଲା । କବିରାଜଙ୍କୁ ଡକାଗଲା, କିନ୍ତୁ କେହି ସେମାନଙ୍କୁ ଭଲ କରିପାରିଲେ ନାହିଁ । ସେମାନେ ଅନ୍ଧ ହୋଇଗଲେ । ବାପ ଘରକୁ ସେମାନେ ଗଲେ । ପୁଣି ଥରେ ସ୍ୱାମୀଙ୍କ ପାଖକୁ ଫେରିବାକୁ ମନ ବଳାଇଲେ ନାହିଁ ।

ଝିଅଟି ପୁଣି ଖୁସିରେ ଭାଇମାନଙ୍କ ସାଥିରେ ରହିଲା ।



